ଓଡ଼ିଶା ମାଧ୍ୟମିକଶିକ୍ଷାପରିଷଦ ଦ୍ୱାରା ପାଠ୍ୟପୁସ୍ତକରୂପେ ମନୋନୀତ ।

# ଅଭିନବ ସଂସ୍କୃତ
# ବ୍ୟାକରଣ-ତରଣୀ

[For H. S. C. Examination—1966
and
H. S. S. C. Examination—1967

—ପ୍ରଣେତା—

ପଣ୍ଡିତ ଶ୍ରୀ ମାୟାଧର ନନ୍ଦ

ହେଡ୍ ପଣ୍ଡିତ, ରେଭେନ୍ସା ବାଳିକାବିଦ୍ୟାଳୟ, କଟକ

ନୂତନ ସଂସ୍କରଣ
ତୃତୀୟ ମୁଦ୍ରଣ—୧୯୬୩

ପ୍ରକାଶକ

ଶ୍ରୀସ୍ୱପ୍ନେଶ୍ୱର ନନ୍ଦ

କାଠଗଡ଼ା ସାହି, କଟକ-୧

ମୂଲ୍ୟ ଟ ୨.୨୫ ନୂ.ପ.

ପ୍ରାପ୍ତିସ୍ଥାନ

୧ । ଶ୍ରୀସ୍ୱପ୍ନେଶ୍ୱର ନନ୍ଦ

କାଠଗଡ଼ା ସାହି, କଟକ—୧

୨ । ଗ୍ରନ୍ଥମନ୍ଦିର

ବିନୋଦବିହାରୀ, କଟକ—୨

ଓ

କଟକର ସମସ୍ତ ବହି ଦୋକାନ

# ଭୂମିକା

ପାଣିନିପ୍ରଭୃତି ମୁନିଋଷିମାନେ ସଂସ୍କୃତବ୍ୟାକରଣଗ୍ରନ୍ଥକୁ ଏପରି ବିରାଟ ଓ ଜଟିଳଭାବରେ ପ୍ରଣୟନ କରିଅଛନ୍ତି ଯେ, ସାଧାରଣତଃ କୋମଳମତି ବାଳକବାଳିକାମାନେ ତହିଁରୁ ସାରଗ୍ରହଣ କରିବାକୁ ଅକ୍ଷମ ହେଉଥିବାରୁ ତାହା ପ୍ରତି ବିତୃଷ୍ଣା ପ୍ରକାଶ କରୁଅଛନ୍ତି । ବ୍ୟାକରଣସମୁଦ୍ର-ମନ୍ଥନରୁ ଅମୃତ ଆହରଣ କରି ବିଦ୍ୟାର୍ଥୀମାନଙ୍କ ସମ୍ମୁଖରେ ପରିବେଷଣ କରିବା ଆଧୁନିକ ବୈୟାକରଣମାନଙ୍କର ଚରମ ଲକ୍ଷ୍ୟ ହେବା ଉଚିତ । ଏଣୁ ଉକ୍ତ ଲକ୍ଷ୍ୟ ପ୍ରତି ଦୃଷ୍ଟି ରଖି ଏହି ବ୍ୟାକରଣ ପୁସ୍ତକଟି ପ୍ରକାଶିତ ହେଲା । ମାଧ୍ୟମିକ ବିଦ୍ୟାଳୟ ପାଇଁ ବ୍ୟାକରଣ ବିଷୟରେ ଯେଉଁ ପାଠ୍ୟ ନିର୍ଘଣ୍ଟ କରାଯାଇଅଛି, ତାହା ଅତି ଅଳ୍ପ ଓ ସରଳ । ସେଥି ପାଇଁ ସୁବୃହତ୍ ଗ୍ରନ୍ଥ ଅନାବଶ୍ୟକ ହେଉଥିବାରୁ ବହୁ ବିଷୟର ସୂକ୍ଷ୍ମାତିସୂକ୍ଷ୍ମ ଆଲୋଚନା କରି ପୁସ୍ତକଟିର କଳେବର ବୃଦ୍ଧି କରାଯାଇ ନାହିଁ । ବ୍ୟାକରଣଶାସ୍ତ୍ର ସହଜରେ ବୁଝାପଡ଼ୁଥିଲେ ଛାତ୍ରମାନେ ସେଥି ପ୍ରତି ସ୍ୱତଃ ଆକୃଷ୍ଟ ହୋଇଥାନ୍ତି । ଏଣୁ ଛାତ୍ରମାନଙ୍କୁ ଆଗ୍ରହୀ କରିବା ପାଇଁ ଏ ପୁସ୍ତକଟିରେ ଭାଷା, ଭାବ ଓ ଦୃଷ୍ଟାନ୍ତ-ଗୁଡ଼ିକର ସରଳତା ଏବଂ ପ୍ରାଞ୍ଜଳତା ପ୍ରତି ଯଥାଯଥ ଦୃଷ୍ଟି ଦିଆଯାଇଅଛି । ପୁଣି ଏଥିରେ ଥିବା ବିଷୟବସ୍ତୁର କ୍ରମବିନ୍ୟାସ ଛାତ୍ରମାନଙ୍କୁ ବ୍ୟାକରଣ-ରାଜ୍ୟରେ ପ୍ରବେଶର ସୁଗମମାର୍ଗ ଦେଖାଇ ଦେଇଛି । ଆଧୁନିକ ରୁଚିରେ ପଠନଶୈଳୀର ଅନୁକୂଳବାତାବରଣ ମଧ୍ୟରେ ଏହି ପୁସ୍ତକଟି ଆତ୍ମପ୍ରକାଶ କରିଅଛି । ବିଶେଷତଃ ଛାତ୍ରମାନେ ଶିକ୍ଷକଙ୍କ ସାହାଯ୍ୟ ବ୍ୟତୀତ ଯେପରି ବ୍ୟାକରଣ ଭଳି କଠିନ ବିଷୟ ଅଧ୍ୟୟନ କରି ବୁଝିପାରିବେ, ସେଥିପ୍ରତି ସତର୍କ ଦୃଷ୍ଟି ଦିଆଯାଇଅଛି । ସୁଧୀବୃନ୍ଦ ଓ ବିଦ୍ୟାର୍ଥୀଗଣ ଏହି ପୁସ୍ତକଟି ପ୍ରତି ଆଗ୍ରହ ପ୍ରକାଶ କଲେ ଶ୍ରମସାର୍ଥକ ହେବ । ଇତି ।

କଟକ
୧୪ । ୬ । ୭୨

ବିନୀତ
**ଲେଖକ**

# ସୂଚି

ବିଷୟ | ପୃଷ୍ଠା

| ବିଷୟ | ପୃଷ୍ଠା |
|---|---|

# ଅଭିନବ
# ସଂସ୍କୃତବ୍ୟାକରଣତରଣୀ

## ବ୍ୟାକରଣ

ଯେଉଁ ଶାସ୍ତ୍ରଦ୍ୱାରା ପଦ, ପଦାର୍ଥ, ବ୍ୟୁତ୍ପତ୍ତି ଓ ବାକ୍ୟଯୋଜନା ପ୍ରଭୃତି ବିଷୟରେ ଯଥାର୍ଥ ଜ୍ଞାନ ଅର୍ଜ୍ଜନ କରାଯାଏ, ତାହାକୁ ବ୍ୟାକରଣ କହନ୍ତି ।

## ବର୍ଣ୍ଣ (ଅକ୍ଷର)

ସଂସ୍କୃତଭାଷାରେ 'ଅ' ଠାରୁ 'ଃ' ପର୍ଯ୍ୟନ୍ତ ଅଠଚାଳିଶଟି * ବର୍ଣ୍ଣ ଅଛି । ଏହା ଦୁଇ ଭାଗରେ ବିଭକ୍ତ । ଯଥା—ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣ । ସ୍ୱରବର୍ଣ୍ଣ ତେରଟି ଓ ବ୍ୟଞ୍ଜନବର୍ଣ୍ଣ ପଇଁତିରିଶଟି ।

## ସ୍ୱରବର୍ଣ୍ଣ

ଯେଉଁ ବର୍ଣ୍ଣ ଅନ୍ୟ ବର୍ଣ୍ଣର ସାହାଯ୍ୟ ନ ନେଇ ଉଚ୍ଚାରିତ ହୁଏ, ତାହାକୁ ସ୍ୱରବର୍ଣ୍ଣ କହନ୍ତି । ଏହା ହ୍ରସ୍ୱ, ଦୀର୍ଘ ଓ ପ୍ଲୁତ ଏହିପରି ତିନି ଭାଗରେ ବିଭକ୍ତ।

### (କ) ହ୍ରସ୍ୱସ୍ୱର

ଏକ ମାତ୍ରାରେ ଅର୍ଥାତ୍ ଥରେ ଚକ୍ଷୁସ୍ପନ୍ଦନକାଳ ମଧ୍ୟରେ ଉଚ୍ଚାରିତ ବର୍ଣ୍ଣ ହ୍ରସ୍ୱସ୍ୱର । ଯଥା—ଅ, ଇ, ଉ, ଋ, ଌ ।

---

* ପାଣିନିସୂତ୍ରମତରେ 'ତ୍ରିଷଷ୍ଟିଶ୍ଚତୁଃଷଷ୍ଟିର୍ବା ବର୍ଣ୍ଣାଃ' ହେଲେ ମଧ୍ୟ ଏଠାରେ ପ୍ରଚଳିତବର୍ଣ୍ଣମାନଙ୍କର ସଂଖ୍ୟା ଦିଆଯାଇଅଛି । କେହି କେହି 'ଁ' କୁ ବର୍ଣ୍ଣମଧ୍ୟରେ ଗଣନା କରନ୍ତି; ମାତ୍ର ଚନ୍ଦ୍ରବିନ୍ଦୁ ବର୍ଣ୍ଣ ନୁହେଁ । ଏହା ଅନୁନାସିକ ଚିହ୍ନ ।

† ଏକମାତ୍ରୋ ଭବେଦ୍ଧ୍ରସ୍ୱୋ ଦ୍ୱିମାତ୍ରୋ ଦୀର୍ଘ ଉଚ୍ୟତେ ।
ତ୍ରିମାତ୍ରସ୍ତୁ ପ୍ଲୁତୋ ଜ୍ଞେୟୋ ବ୍ୟଞ୍ଜନଞ୍ଚାର୍ଦ୍ଧମାତ୍ରକମ୍ ॥

### (ଖ) ଦୀର୍ଘସ୍ୱର

ଦୁଇ ମାତ୍ରାରେ ଉଚ୍ଚାରିତ ବର୍ଣ୍ଣ ଦୀର୍ଘସ୍ୱର । ଯଥା– ଆ, ଈ, ଊ, ୠ, ଏ, ଐ, ଓ, ଔ ।

### (ଗ) ପ୍ଲୁତସ୍ୱର

ତିନି କମ୍ବା ତହିଁରୁ ଅଧିକ ମାତ୍ରାରେ ଉଚ୍ଚାରିତ ବର୍ଣ୍ଣ ପ୍ଲୁତସ୍ୱର । ହ୍ରସ୍ୱ ଓ ଦୀର୍ଘ ଉଚ୍ଚାରଣ ଦ୍ୱାରା ପ୍ଲୁତ ହୁଅନ୍ତି । ବେଦଗାନରୁ ପ୍ଲୁତର ଦୃଷ୍ଟାନ୍ତ ମିଳିଥାଏ ।

## ବ୍ୟଞ୍ଜନବର୍ଣ୍ଣ

ଯେଉଁ ବର୍ଣ୍ଣ ଅର୍ଦ୍ଧମାତ୍ରାରେ ଉଚ୍ଚାରିତ ହୁଏ, ଅର୍ଥାତ୍ ନିଜେ ଉଚ୍ଚାରିତ ହୋଇ ନ ପାରି ସ୍ୱରବର୍ଣ୍ଣ ସାହାଯ୍ୟରେ ଉଚ୍ଚାରିତ ହୁଏ, ତାହାକୁ ବ୍ୟଞ୍ଜନବର୍ଣ୍ଣ କହନ୍ତି । ଯଥା—'କ' ଠାରୁ 'ଃ' ପର୍ଯ୍ୟନ୍ତ ।

ବ୍ୟଞ୍ଜନବର୍ଣ୍ଣ ଚାରିଭାଗରେ ବିଭକ୍ତ । ଯଥା—ବର୍ଗ୍ୟ, ଅନ୍ତଃସ୍ଥ, ଉଷ୍ମ ଓ ଅଯୋଗବାହ ।

### ବର୍ଗ୍ୟବର୍ଣ୍ଣ

'କ' ଠାରୁ 'ମ' ପର୍ଯ୍ୟନ୍ତ ପଚିଶଟି ଅକ୍ଷର ବର୍ଗ୍ୟବର୍ଣ୍ଣ । ଏହା ପାଞ୍ଚଭାଗରେ ବିଭକ୍ତ । ପ୍ରତ୍ୟେକ ଭାଗକୁ ଗୋଟିଏ ଗୋଟିଏ ବର୍ଗ କହନ୍ତି । ଏଣୁ ବର୍ଗ ପାଞ୍ଚଟି । ଯଥା—**କ, ଚ, ଟ, ତ, ପ**

କ ବର୍ଗ—କ ଖ ଗ ଘ ଙ
ଚ ବର୍ଗ—ଚ ଛ ଜ ଝ ଞ
ଟ ବର୍ଗ—ଟ ଠ ଡ ଢ ଣ
ତ ବର୍ଗ—ତ ଥ ଦ ଧ ନ
ପ ବର୍ଗ—ପ ଫ ବ ଭ ମ

(ଖ) ଅନ୍ତଃସ୍ଥବର୍ଣ୍ଣ—ଯ, ର, ଲ, ବ

(ଗ) ଉଷ୍ମବର୍ଣ୍ଣ—ଶ, ଷ, ସ, ହ

(ଘ) ଅଯୋଗବାହବର୍ଣ୍ଣ—ଂ, ଃ

ବ୍ୟଞ୍ଜନବର୍ଣ୍ଣର ଅନ୍ୟ ନାମ ହସ୍ ବା ହଲ୍ । ଏଣୁ ଏହି ବର୍ଣ୍ଣ ଯେଉଁ ଶବ୍ଦର ଅନ୍ତ (ଶେଷ)ରେ ଥାଏ, ତାହାକୁ ହସନ୍ତ ବା ହଳନ୍ତ ଶବ୍ଦ କହନ୍ତି ।

ପ୍ରଶ୍ନ

୧ । ବ୍ୟଞ୍ଜନବର୍ଣ୍ଣ କେତେ ଭାଗରେ ବିଭକ୍ତ ?
୨ । ଅଯୋଗବାହ ବର୍ଣ୍ଣ କଏ କଏ ?
୩ । ସ୍ୱରବର୍ଣ୍ଣ କାହାକୁ କହନ୍ତି ?

---

# ପଦ

ଅର୍ଥବିଶିଷ୍ଟ ପ୍ରକୃତି ବା ମୌଳିକ ଶବ୍ଦ ବିଭକ୍ତିଯୁକ୍ତ ହେଲେ ପଦ ହୁଏ । ବିଭକ୍ତି ଦୁଇ ପ୍ରକାର । ଯଥା—'ସୁପ୍' ଓ 'ତିଙ୍' । ଏଣୁ ପଦ ଦୁଇ ପ୍ରକାର । ଯଥା—'ସୁବନ୍ତ' ଓ 'ତିଙନ୍ତ' ।

## ପ୍ରକୃତି

ଯାହାପରେ ପ୍ରତ୍ୟୟ ଯୋଗ କରାଯାଏ, ତାହାକୁ ପ୍ରକୃତି କହନ୍ତି । ଏହା ଦୁଇ ପ୍ରକାର । ଯଥା—ପ୍ରାତିପଦିକ ବା ନାମ ଓ ଧାତୁ ।

### (କ) ପ୍ରାତିପଦିକ

ପ୍ରତ୍ୟୟଭିନ୍ନ ଓ କ୍ରିୟାଭିନ୍ନ ଅର୍ଥବୋଧକ ଶବ୍ଦକୁ ପ୍ରାତିପଦିକ କହନ୍ତି ।

### (ଖ) ଧାତୁ

କ୍ରିୟାବୋଧକ ପଠ୍ ଓ ଗମ୍ ପ୍ରଭୃତିକୁ ଧାତୁ କହନ୍ତି ।

## ସୁବନ୍ତ

ସୁ, ଔ, ଜସ୍ ପ୍ରଭୃତି ବିଭକ୍ତିକୁ ସୁପ୍ କହନ୍ତି । ପ୍ରାତିପଦିକ ସୁପ୍ ବିଭକ୍ତିଯୁକ୍ତ ହେଲେ ସୁବନ୍ତ ହୁଏ । ଏହା ଚାରି ପ୍ରକାର । ଯଥା—ବିଶେଷ୍ୟ, ବିଶେଷଣ, ସର୍ବନାମ ଓ ଅବ୍ୟୟ (ଅବ୍ୟୟରେ ସୁପ୍ ବିଭକ୍ତିଚିହ୍ନ ନ ଥିଲେ ମଧ୍ୟ ତାହା ସୁବନ୍ତ) ।

## (କ) ବିଶେଷ୍ୟ

ଜାତି, ବ୍ୟକ୍ତି, ଗୁଣ, ବସ୍ତୁ ଓ କ୍ରିୟାର ନାମକୁ ବୁଝାଉଥିବା ପଦ ବିଶେଷ୍ୟ । ଏହା ପାଞ୍ଚ ପ୍ରକାର ।

୧ । ଜାତିବାଚକ—ସିଂହଃ, ପର୍ବତଃ, ନଦୀ ଓ ଫଳମ୍ ଇତ୍ୟାଦି ।

୨ । ବ୍ୟକ୍ତିବାଚକ—ରାମଃ, ସୀତା ଓ କାଶୀ ଇତ୍ୟାଦି ।

୩ । ଗୁଣବାଚକ—ଦୟା, ସାଧୁତା ଓ ମାଧୁର୍ଯ୍ୟମ୍ ଇତ୍ୟାଦି ।

୪ । ବସ୍ତୁବାଚକ—ସୁବର୍ଣ୍ଣମ୍, ରୌପ୍ୟମ୍ ଓ କାଷ୍ଠମ୍ ଇତ୍ୟାଦି ।

୫ । କ୍ରିୟାବାଚକ—ଗମନମ୍, ଶୟନମ୍ ଓ ପାକଃ ଇତ୍ୟାଦି ।

## (ଖ) ବିଶେଷଣ

ବିଶେଷ୍ୟ ପ୍ରଭୃତିର ଗୁଣ, ଅବସ୍ଥା ଓ ପରିମାଣ ପ୍ରଭୃତି ପ୍ରକାଶ କରୁଥିବା ପଦ ବିଶେଷଣ । ଏହା ପାଞ୍ଚ ପ୍ରକାର ।

୧ । ବିଶେଷ୍ୟର ବିଶେଷଣ—ସୁନ୍ଦରଃ ବାଳକଃ ।

୨ । ବିଶେଷଣର ବିଶେଷଣ—ଅଳ୍ପଂ କୋମଳଂ ବସ୍ତ୍ରଂ ।

୩ । ସର୍ବନାମର ବିଶେଷଣ—ସୁନ୍ଦରୀ ସା ଗଚ୍ଛତି ।

୪ । ଅବ୍ୟୟର ବିଶେଷଣ—ମନୋହରଂ ପ୍ରାତଃ ।

୫ । କ୍ରିୟାର ବିଶେଷଣ—ଶୀଘ୍ରଂ ଧାବତି ବାଳକଃ ।

## (ଗ) ସର୍ବନାମ

ବିଶେଷ୍ୟ ପରିବର୍ତ୍ତିରେ ବ୍ୟବହୃତ ହେଉଥିବା ସର୍ବ, ଇଦମ୍ ଓ ଏତଦ୍ ପ୍ରଭୃତି ଶବ୍ଦ ସର୍ବନାମ । ଯଥା—ଗୋବିନ୍ଦଃ ତସ୍ୟ ପିତା ସହ ଯାତି । ଏଠାରେ "ତସ୍ୟ" ଗୋବିନ୍ଦ ପରିବର୍ତ୍ତିରେ ବ୍ୟବହୃତ ହୋଇଅଛି ।

"ସର୍ବାଦୀନି ସର୍ବନାମାନି"

(ଅବ୍ୟୟର ଆଲୋଚନା ସ୍ଥାନାନ୍ତରରେ କରାଯିବ ।)

## ଶତୃନ୍ତ

ଶତ୍, ତସ୍, ଅନ୍ତ ପ୍ରଭୃତି ବିଭକ୍ତିକୁ ଶତୃ କୁହାଯାଏ । ଧାତୁ ଶତୃ ବିଭକ୍ତିଯୁକ୍ତ ହେଲେ ଶତୃନ୍ତ ହୁଏ । ଯଥା—ଗମ୍+ଶତ୍=ଗଚ୍ଛତ, ଗମ୍+ତସ୍—ଗଚ୍ଛତଃ, ଗମ୍+ଅନ୍ତ=ଗଚ୍ଛନ୍ତ ଇତ୍ୟାଦି ।

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର—ଧଳା ହାତୀ । କଳା ମେଘ । କୋମଳ ଲତା । ଗୋଲାକାର ଚନ୍ଦ୍ର । ଉଚ୍ଚ ପର୍ବତରୁ । ସେହି (ସଃ) ଗଛ । ବାଳକ ଧୀରେ ଧୀରେ (ମନ୍ଦଂ ମନ୍ଦଂ) ପଢୁଅଛି । ସୁଦୀର୍ଘ ଦିବସ (ଦିବା) । ଗହୀରିଆ କୂଅରୁ । ନିର୍ମଳ ଆକାଶରେ । ଶ୍ରେଷ୍ଠ (ଶ୍ରେଷ୍ଠ) ଲୋକ ।

୨ । ବିଶେଷଣ କେତେ ପ୍ରକାର ? ପ୍ରତ୍ୟେକର ଉଦାହରଣ ଦିଅ ।

---

(ବିଶେଷ୍ୟ, ବିଶେଷଣ ଓ ସର୍ବନାମ ପଦର ଲିଙ୍ଗ, ବଚନ ଓ ପୁରୁଷର ବିଚାର କରାଯାଏ ।)

## ଲିଙ୍ଗ

ଲିଙ୍ଗ ତିନି ପ୍ରକାର । ଯଥା—ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଓ କ୍ଲୀବଲିଙ୍ଗ ।

### ପୁଂଲିଙ୍ଗ

ପୁରୁଷକୁ ବୁଝାଉଥିବା ଶବ୍ଦ ପ୍ରାୟ ପୁଂଲିଙ୍ଗ । ଯଥା—ନର, ଦେବ, ଅଶ୍ୱ, ବାଳକ, ରାଜନ୍, ଶ୍ୱନ୍ ଓ ଯୁବନ୍ ପ୍ରଭୃତି ।

ପୁରୁଷକୁ ବୁଝାଉ ନ ଥିଲେ ମଧ୍ୟ ନିମ୍ନଲିଖିତ ଶବ୍ଦଗୁଡ଼ିକ ପୁଂଲିଙ୍ଗ ।

୧ । ଘଞ୍ ଓ ଅଲ୍ ପ୍ରତ୍ୟୟାନ୍ତ ଶବ୍ଦ—ପାକ, ରାଗ, ରୋଗ, ଭୋଗ, ଯାଗ, ଜୟ ଓ ବିନୟ ପ୍ରଭୃତି; ମାତ୍ର ଭୟ, ବର୍ଷ, ପଦ ଏବଂ ମୁଖ ଶବ୍ଦ କ୍ଲୀବଲିଙ୍ଗ ।

୨ । କି ପ୍ରତ୍ୟୟାନ୍ତ ଶବ୍ଦ—ନିଧି, ବିଧି, ବାରିଧି ଓ ଜଳଧି ପ୍ରଭୃତି ।

୩ । ନଙ୍ (ନ) ପ୍ରତ୍ୟୟାନ୍ତ ଶବ୍ଦ—ପ୍ରଶ୍ନ, ଯତ୍ନ ଓ ଯଜ୍ଞ ପ୍ରଭୃତି; ମାତ୍ର ଯାଚ୍ଞା ଓ ତୃଷ୍ଣା ଶବ୍ଦ ସ୍ତ୍ରୀଲିଙ୍ଗ ।

୪ । ରୁ ଓ ଊ କାରାନ୍ତ ଶବ୍ଦ—ମେରୁ, ଶତ୍ରୁ, ସେତୁ ଓ ହେତୁ ପ୍ରଭୃତି; ମାତ୍ର ବସ୍ତୁ ଓ ଜତୁ ଶବ୍ଦ କ୍ଲୀବଲିଙ୍ଗ ।

୫ । ଅଥୁ ଓ ଇମନ୍ ପ୍ରତ୍ୟୟାନ୍ତ ଶବ୍ଦ—ବେପଥୁ, ଗରିମନ୍ ଓ ମହିମନ୍ ପ୍ରଭୃତି; ମାତ୍ର ପ୍ରେମନ୍ ଶବ୍ଦ ପୁଂଲିଙ୍ଗ ଏବଂ କ୍ଲୀବଲିଙ୍ଗ ।

୬ । ସୂର୍ଯ୍ୟ ଅର୍ଥରେ ମିତ୍ର ଶବ୍ଦ ପୁଂଲିଙ୍ଗ ଏବଂ ବନ୍ଧୁ ଅର୍ଥରେ କ୍ଲୀବଲିଙ୍ଗ ।

ଉକ୍ତ ଶବ୍ଦମାନଙ୍କ ବ୍ୟତୀତ ନିମ୍ନଲିଖିତ ଶବ୍ଦଗୁଡ଼ିକ ପୁଂଲିଙ୍ଗ । ଯଥା—

ଅଗ୍ନି, ବାୟୁ, ସ୍ୱର୍ଗ, ପର୍ବତ, ମେଘ, ବୃକ୍ଷ, କାଳ, ଖଡ଼୍ଗ, ଶର, ହସ୍ତ, ପାଦ, ଗଣ୍ଡ, ଓଷ୍ଠ, ଦନ୍ତ, ବାହୁ, କେଶ, କଣ୍ଠ, ନଖ, ସ୍ତନ, ଗୁଲ୍ଫ, ମାସ, ରସ, ଓ ଶବ୍ଦ ପ୍ରଭୃତି ।

## ସ୍ତ୍ରୀଲିଙ୍ଗ

ସ୍ତ୍ରୀକୁ ବୁଝାଉଥିବା ଶବ୍ଦ ପ୍ରାୟ ସ୍ତ୍ରୀଲିଙ୍ଗ । ଯଥା – ମାତୃ, ଜନନୀ, ନାରୀ, ବାଳିକା, ମୃଗୀ, ସିଂହୀ, ରାଜ୍ଞୀ, ଯୁବତୀ ଓ ଶୁନୀ ପ୍ରଭୃତି ।

ସ୍ତ୍ରୀକୁ ବୁଝାଉ ନ ଥିଲେ ମଧ୍ୟ ନିମ୍ନଲିଖିତ ଶବ୍ଦଗୁଡ଼ିକ ସ୍ତ୍ରୀଲିଙ୍ଗ ।

୧ । କ୍ତି ପ୍ରତ୍ୟୟାନ୍ତ ଶବ୍ଦ – ମତି, ଭ୍ରାନ୍ତି, ଶାନ୍ତି, ହାନି ଓ ଗ୍ଲାନି ପ୍ରଭୃତି ।

୨ । ତଲ୍ (ତା) ପ୍ରତ୍ୟୟାନ୍ତ ଶବ୍ଦ – ଲଘୁତା, ଗୁରୁତା ଓ ହୀନତା ପ୍ରଭୃତି ।

୩ । ତିଥିବାଚକ ଶବ୍ଦ – ପ୍ରତିପଦ୍ ଓ ଦ୍ୱିତୀୟା ପ୍ରଭୃତି ।

ଉକ୍ତ ଶବ୍ଦମାନଙ୍କ ବ୍ୟତୀତ ନିମ୍ନଲିଖିତ ଶବ୍ଦମାନେ ସ୍ତ୍ରୀଲିଙ୍ଗ । ଯଥା – ଭୂମି, ନଦୀ, ଲତା, ବହ୍ନି, ଦିଶ୍, ଲଜ୍ଜା, ଶ୍ରେଣି, ବୀଣା ଓ ଶୋଭା ପ୍ରଭୃତି ।

## କ୍ଲୀବଲିଙ୍ଗ

ଯେଉଁସବୁ ଶବ୍ଦ ପୁରୁଷ କିମ୍ବା ସ୍ତ୍ରୀକୁ ବୁଝାଏ ନାହିଁ, ସେଗୁଡ଼ିକ ପ୍ରାୟ କ୍ଲୀବଲିଙ୍ଗ । ଯଥା – ଫଳ, ଜଳ ଓ ପଦ୍ମ ପ୍ରଭୃତି ।

ନିମ୍ନଲିଖିତ ଶବ୍ଦଗୁଡ଼ିକ କ୍ଲୀବଲିଙ୍ଗ ।

୧ । ଲ୍ୟୁଟ୍ (ଅନ) ପ୍ରତ୍ୟୟାନ୍ତ ଶବ୍ଦ – ଗମନ, ଭୋଜନ, ଶୟନ ଓ ରୋଦନ ପ୍ରଭୃତି ।

୨ । ଦ୍ୱିସ୍ୱରବିଶିଷ୍ଟ 'ସ୍' କାରାନ୍ତ ଶବ୍ଦ – ପୟସ୍, ଯଶସ୍, ତେଜସ୍, ମନସ୍ ଓ ଚେତସ୍ ପ୍ରଭୃତି; ମାତ୍ର ବେଧସ୍ ଶବ୍ଦ ପୁଂଲିଙ୍ଗ ।

୩ । ※ ଇସ୍ ଓ ଉସ୍ ଶେଷରେ ଥିବା ଶବ୍ଦ – ହବିସ୍, ଜ୍ୟୋତିସ୍, ଧନୁସ୍, ଚକ୍ଷୁସ୍ ଓ ଆୟୁସ୍ ପ୍ରଭୃତି ।

୪ । ମନ୍ ଶେଷରେ ଥିବା ଶବ୍ଦ – କର୍ମନ୍, ଚର୍ମନ୍, ବର୍ମନ୍, ବର୍ତ୍ମନ୍ ଓ ଜନ୍ମନ୍ ପ୍ରଭୃତି; ମାତ୍ର ବ୍ରହ୍ମନ୍ ଶବ୍ଦ ପୁଂଲିଙ୍ଗ ଓ କ୍ଲୀବଲିଙ୍ଗ ଏବଂ ଆତ୍ମନ୍ ଶବ୍ଦ ପୁଂଲିଙ୍ଗ ।

## ବଚନ

ବଚନ ତିନି ପ୍ରକାର । ଯଥା – ଏକବଚନ, ଦ୍ୱିବଚନ ଓ ବହୁବଚନ ।

(କ) ଏକ ସଂଖ୍ୟାକୁ ବୁଝାଉଥିଲେ ଏକବଚନ ହୁଏ । ଯଥା –
ନରଃ, ଲତା, ଫଳମ୍ (ଗୋଟିଏ) ।

(ଖ) ଦୁଇ ସଂଖ୍ୟାକୁ ବୁଝାଉଥିଲେ ଦ୍ୱିବଚନ ହୁଏ । ଯଥା –
ନରୌ, ଲତେ, ଫଳେ (ଦୁଇଟି) ।

(ଗ) ଦୁଇରୁ ଅଧିକ (ବହୁ) ସଂଖ୍ୟାକୁ ବୁଝାଉଥିଲେ ବହୁବଚନ ହୁଏ । ଯଥା –
ନରାଃ, ଲତାଃ, ଫଳାନି (ବହୁତ) ।

### ଲିଙ୍ଗ ଓ ବଚନରେ ବିଶେଷ ବିଧି—

୧ । ଦାର, ପ୍ରାଣ, ଲାଜ, ଅକ୍ଷତ ଓ ଅସୁ ଶବ୍ଦ ବହୁବଚନାନ୍ତ ଓ ପୁଂଲିଙ୍ଗ ।

୨ । ବର୍ଷା, ସିକତା, ସମା, ଅପ୍ ଓ ସୁମନସ୍ ଶବ୍ଦ ବହୁବଚନାନ୍ତ ଓ ସ୍ତ୍ରୀଲିଙ୍ଗ ।

---

※ କେହି କେହି ହବିସ୍ ଓ ଧନୁସ୍ ପ୍ରଭୃତି ଶବ୍ଦକୁ 'ଷ୍' କାରାନ୍ତ କହନ୍ତି; ମାତ୍ର ଔଣାଦିକ 'ଅର୍ଚ୍ଚିର୍ୟାଦେଶସ୍) 'ଅର୍ତ୍ତିପୃବପିଯଜିତନିଧନିତପିଭ୍ୟ-ଉସ୍' ଏବଂ 'ଜନାଦେରୁସ୍' ପ୍ରଭୃତି ସୂତ୍ରମାନଙ୍କଦ୍ୱାରା ଉକ୍ତ ଶବ୍ଦଗୁଡ଼ିକ ନିଷ୍ପନ୍ନ । ହବିଷୀ ଓ ଧନୁଷୀ ପ୍ରଭୃତିଠାରେ ଷତ୍ୱବିଧି ଅନୁସାରେ 'ଷ୍' ହୋଇଅଛି । ଏଣୁ ଉକ୍ତ ଶବ୍ଦଗୁଡ଼ିକ 'ସ୍' କାରାନ୍ତ ।

୩ । ଭାବବାଚ୍ୟରେ କ୍ତ ଏବଂ କୃତ୍ୟ ପ୍ରତ୍ୟୟାନ୍ତ ପଦ କ୍ଲୀବଲିଙ୍ଗ ଓ ଏକବଚନାନ୍ତ । ଯଥା – କ୍ରୀଡ଼ିତମ୍, ହସିତମ୍, ଭବିତବ୍ୟମ୍, ସ୍ଥାନୀୟମ୍ ଓ ହାସ୍ୟମ୍ ପ୍ରଭୃତି ।

୪ । ଅବ୍ୟୟୀଭାବ ଓ ସମାହାର ଦ୍ୱନ୍ଦ୍ୱ ସମାସନିଷ୍ପନ୍ନ ପଦ କ୍ଲୀବଲିଙ୍ଗ ଓ ଏକବଚନାନ୍ତ । ଯଥା – ପ୍ରତିକ୍ଷଣମ୍, ଯଥାଶକ୍ତି, କରଚରଣମ୍ ଓ ଶଙ୍ଖଦୁନ୍ଦୁଭି ପ୍ରଭୃତି ।

୫ । ସମାହାରଦ୍ୱିଗୁ ସମାସନିଷ୍ପନ୍ନ ପଦମଧ୍ୟରୁ କେତେକ ସ୍ତ୍ରୀଲିଙ୍ଗ ଓ ଏକବଚନାନ୍ତ ଏବଂ କେତେକ କ୍ଲୀବଲିଙ୍ଗ ଓ ଏକବଚନାନ୍ତ । ଯଥା – ଦଶଗ୍ରାମୀ, ପଞ୍ଚବଟୀ, ଚତୁର୍ଯୁଗମ୍ ଓ ପଞ୍ଚପାତ୍ରମ୍ ଇତ୍ୟାଦି ।

(ଶବ୍ଦରୂପ ପ୍ରସଙ୍ଗରେ ଲିଙ୍ଗ ଓ ବଚନ ବିଷୟରେ ଜ୍ଞାନାର୍ଜନ ପାଇଁ ଯଥାସ୍ଥାନରେ ନିର୍ଦ୍ଦେଶ ଦିଆଯାଇଅଛି ।)

ବିଶେଷଣ ଓ ସର୍ବନାମର ଲିଙ୍ଗ ଏବଂ ବଚନ:—

(କ) ସୁଶୀଲଃ ବାଳକଃ । ସୁଶୀଳା ବାଳିକା । ସୁଶୀଲଂ ମିତ୍ରମ୍ ।

(ଖ) କୋମଳୌ ପଦାର୍ଥୌ । କୋମଳେ ଲତେ । କୋମଳେ ଫଳେ ।

(ଗ) ଶୁକ୍ଲାଃ ହଂସାଃ । ଦରିଦ୍ରାଃ ବାଳିକାଃ । ପକ୍ୱାନି ଫଳାନି ।

ଏଠାରେ ବିଶେଷ୍ୟ ଅନୁସାରେ ବିଶେଷଣର ଲିଙ୍ଗ ଓ ବଚନ ନିର୍ଦ୍ଧାରିତ ହୋଇଅଛି ।

(କ) ଏଷ ମାନବଃ, ଏଷା ରମଣୀ, ଏତତ୍ ପୁଷ୍ପମ୍ ।

(ଖ) ତୌ ଅଶ୍ୱୌ, ତେ ନଦ୍ୟୌ, ତେ ଫଳେ ।

(ଗ) ଇମେ ପଣ୍ଡିତାଃ, ଇମାଃ ମାତରଃ, ଇମାନି ଦ୍ରବ୍ୟାଣି ।

ଏଠାରେ ବିଶେଷ୍ୟ ଅନୁସାରେ ସର୍ବନାମର ଲିଙ୍ଗ ଓ ବଚନ ନିର୍ଦ୍ଧାରିତ ହୋଇଅଛି ।

ସୂତ୍ର – ସାଧାରଣତଃ ବିଶେଷ୍ୟର ଯେଉଁ ଲିଙ୍ଗ ଏବଂ ବଚନ ହୋଇଥାଏ, ବିଶେଷଣ ଏବଂ ସର୍ବନାମର ସେହି ଲିଙ୍ଗ ଓ ବଚନ ହୁଏ ।

ବିଭିନ୍ନଲିଙ୍ଗବୋଧକ ଏକାଧିକ ବିଶେଷ୍ୟର ବିଶେଷଣର ଲିଙ୍ଗ:—

୧। 'ପୁତ୍ରଃ କନ୍ୟା ଚ ସୁନ୍ଦରୌ' ଏଠାରେ ବିଶେଷଣ ପୁଂଲିଙ୍ଗ ।

ସୂତ୍ର — ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ ଉଭୟ ବିଶେଷ୍ୟର ଏକ ବିଶେଷଣ ହେଲେ ବିଶେଷଣ ପୁଂଲିଙ୍ଗ ହୁଏ ।

୨। 'ପିତା ମିତ୍ରଂ ଚ ପୀଡ଼ିତେ' ଏଠାରେ ବିଶେଷଣ କ୍ଲୀବଲିଙ୍ଗ ।

ସୂତ୍ର — ପୁଂଲିଙ୍ଗ ଓ କ୍ଲୀବଲିଙ୍ଗ ଉଭୟ ବିଶେଷ୍ୟର ଏକ ବିଶେଷଣ ହେଲେ ବିଶେଷଣ କ୍ଲୀବଲିଙ୍ଗ ହୁଏ ।

୩। 'ଲତାଃ ପତ୍ରାଣି ଚ କୋମଳାନି' ଏଠାରେ ବିଶେଷଣ କ୍ଲୀବଲିଙ୍ଗ ।

ସୂତ୍ର — ସ୍ତ୍ରୀଲିଙ୍ଗ ଓ କ୍ଲୀବଲିଙ୍ଗ ଉଭୟ ବିଶେଷ୍ୟର ଏକ ବିଶେଷଣ ହେଲେ ବିଶେଷଣ କ୍ଲୀବଲିଙ୍ଗ ହୁଏ ।

୪। 'ରାମଃ ସୀତା ମିତ୍ରଂ ଚ ପୂଜନୀୟାନି' ଏଠାରେ ବିଶେଷଣ କ୍ଲୀବଲିଙ୍ଗ ।

ସୂତ୍ର — ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଓ କ୍ଲୀବଲିଙ୍ଗ ବିଶେଷ୍ୟର ଏକ ବିଶେଷଣ ହେଲେ ବିଶେଷଣ କ୍ଲୀବଲିଙ୍ଗ ହୁଏ ।

ବିଭିନ୍ନବଚନରେ ଥିବା ଏକାଧିକ ବିଶେଷ୍ୟର ବିଶେଷଣର ବଚନ: —

'ଗୋପାଳଃ ଶ୍ୟାମଃ ଚ ଆନନ୍ଦିତୌ' ଏଠାରେ ବିଶେଷଣର ଦ୍ୱିବଚନ ହୋଇଅଛି ।

'ପତ୍ରଂ ପୁଷ୍ପଂ ଫଳଂ ଚ କୋମଳାନି' ଏଠାରେ ବିଶେଷଣର ବହୁବଚନ ହୋଇଅଛି ।

'ଛାତ୍ରୌ ପୁତ୍ରୌ ଚ କ୍ରୀଡ଼ିତାଃ' ଏଠାରେ ବିଶେଷଣର ବହୁବଚନ ହୋଇଅଛି ।

'ମୃଗୌ ଅଶ୍ୱୌ ଗଜୌ ଚ ଆଗତାଃ'ଏଠାରେ ବିଶେଷଣର ବହୁବଚନ ହୋଇଅଛି ।

ସୂତ୍ର — ଦୁଇଟି ଏକବଚନାନ୍ତ ବିଶେଷ୍ୟର ବିଶେଷଣ ଦ୍ୱିବଚନାନ୍ତ ହୁଏ, ଦୁଇରୁ ଅଧିକ ଏକବଚନାନ୍ତ ବିଶେଷ୍ୟର, ଦୁଇଟି ଦ୍ୱିବଚନାନ୍ତ

ବିଶେଷ୍ୟର ଏବଂ ଦୁଇରୁ ଅଧିକ ବହୁବଚନାନ୍ତ ବିଶେଷ୍ୟର ବିଶେଷଣ ବହୁବଚନାନ୍ତ ହୁଏ ।

ଅବ୍ୟୟ ଓ କ୍ରିୟାର ବିଶେଷଣର ଲିଙ୍ଗ ଏବଂ ବଚନ: –

ରମଣୀୟଂ ପ୍ରାତଃ ଓ ସୁଦୀର୍ଘଂ ଦିବା (ପ୍ରାତଃ ଏବଂ ଦିବା ଅବ୍ୟୟ) ।

ପକ୍ଷୀ ମଧୁରଂ କୂଜତି ଓ ସ ଧୀରଂ ବଦତି (କୂଜତି ଓ ବଦତି କ୍ରିୟା) ।

ଏହି ଉଦାହରଣମାନଙ୍କରେ ବିଶେଷଣ କ୍ଲୀବଲିଙ୍ଗ ଓ ଏକବଚନାନ୍ତ ହୋଇଅଛି ।

ସୂତ୍ର – ଅବ୍ୟୟ ଓ କ୍ରିୟାର ବିଶେଷଣ କ୍ଲୀବଲିଙ୍ଗ ଏବଂ ଏକବଚନାନ୍ତ ହୁଏ ।

## ପୁରୁଷ

ପୁରୁଷ ତିନି ପ୍ରକାର । ଯଥା – ପ୍ରଥମ, ମଧ୍ୟମ ଓ ଉତ୍ତମ ।

### (କ) ପ୍ରଥମପୁରୁଷ

ଯୁଷ୍ମଦ୍ ଓ ଅସ୍ମଦ୍ ଶବ୍ଦବ୍ୟତୀତ ଅନ୍ୟ ସମସ୍ତ ଶବ୍ଦରୁ ନିଷ୍ପନ୍ନ ପଦ ପ୍ରଥମପୁରୁଷ । ଯଥା – ରାମଃ, ସଃ, ଭବାନ୍ ଓ ଗଙ୍ଗା ପ୍ରଭୃତି ।

### (ଖ) ମଧ୍ୟମପୁରୁଷ

ଯୁଷ୍ମଦ୍ (ତୁ, ତୁମ୍ଭେ) ଶବ୍ଦରୁ ନିଷ୍ପନ୍ନ ପଦ ମଧ୍ୟମ ପୁରୁଷ । ଯଥା – ତ୍ୱମ୍, ଯୁବାମ୍, ଯୂୟମ୍ ପ୍ରଭୃତି ।

### (ଗ) ଉତ୍ତମପୁରୁଷ

ଅସ୍ମଦ୍ (ମୁଁ, ଆମ୍ଭେ) ଶବ୍ଦରୁ ନିଷ୍ପନ୍ନ ପଦ ଉତ୍ତମପୁରୁଷ । ଯଥା – ଅହମ୍, ଆବାମ୍, ବୟମ୍ ପ୍ରଭୃତି ।

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର – ବାଘର ନଖ ମୁନିଆଁ । ଆମ୍ବର ରସ ମଧୁର । ସୂର୍ଯ୍ୟଙ୍କର ତାପ ଅସହ୍ୟ । ତୋର ଦୁଇଟି ବହି ଥିଲା । ଏହି (ଇମାଂ) ମାଳା ନେଇ ଘରକୁ ଯାଅ । ଶରତ୍କାଳରେ ଆକାଶ (ଆକାଶଂ) ନିର୍ମଳ ହୁଏ । ଶିଶୁର ମନ ଅତି ପବିତ୍ର (ପବିତ୍ରମ୍) ।

୬ । ସଂଶୋଧନ କର — ଗୋବିନ୍ଦସ୍ୟ ବୃକ୍ଷ ଃ ଫଳେଣଃ । କ୍ଷୀଣଃ ନଦୀ । ପ୍ରଶ୍ନଂ କଠିନମ୍ ଅପୀତ୍ । ସର୍ପାଣି ଭ୍ରମନ୍ତି । ସ ତ୍ରୀଣି ମାସାନ ଅତିଷ୍ଠତ୍ ।

---

## *ଣତ୍ୱବିଧି (ନ୍ ସ୍ଥାନରେ ଣ୍ ହେବା ନିୟମ)

ଧାତୃଣା (ଧ୍ ଆ ତ୍ ର୍ ନ୍ ଆ)
ପିତୃଣାମ୍ (ପ୍ ଇ ତ୍ ଋ ନ୍ ଆ ମ୍)
ଚତୁର୍ଣାମ୍ (ଚ୍ ଅ ତ୍ ଉ ର୍ ନ୍ ଆ ମ୍)
କୃଷ୍ଣଃ (କ୍ ଋ ଷ୍ ନ୍ ଅଃ)

ସୂତ୍ର—ଋ, ଋ, ର୍ ଓ ଷ୍ ର ପରସ୍ଥିତ ପଦମଧ୍ୟବର୍ତ୍ତୀ 'ନ୍'ସ୍ଥାନରେ 'ଣ୍'ହୁଏ ।

ନରେଣ (ନ୍ ଅ ର୍ ଏ ନ୍ ଅ)
ମୃଗେଣ (ମ୍ ଋ ଗ୍ ଏ ନ୍ ଅ)
ଦ୍ରୁମେଣ (ଦ୍ ର୍ ଉ ମ୍ ଏ ନ୍ ଅ)
ରଘୁେଣ (ର୍ ଅ ଘୁ ଏ ନ୍ ଅ)
ସର୍ବେଣ (ସ୍ ଅ ର୍ ବ୍ ଏ ନ୍ ଅ)
ଗ୍ରହାଣାମ୍ (ଗ୍ ର୍ ଅ ହ୍ ଆ ନ୍ ଆ ମ୍)
ବୃଂହଣମ୍ (ବ୍ ଋଂ ହ୍ ଅ ନ୍ ଅ ମ୍)

ସୂତ୍ର—ସ୍ୱରବର୍ଣ୍ଣ (ଅ ଠାରୁ ଔ), କ ବର୍ଗବର୍ଣ୍ଣ (କ୍, ଖ୍, ଗ୍, ଘ୍, ଙ୍) ପ ବର୍ଗବର୍ଣ୍ଣ (ପ୍, ଫ୍, ବ୍, ଭ୍, ମ୍), ଯ୍, ବ୍, ହ୍ ଓ ଅନୁସ୍ୱାର ବ୍ୟବଧାନ ଥିଲେ ମଧ୍ୟ ପୂର୍ବ ନିୟମ ଅନୁସାରେ 'ନ୍' ସ୍ଥାନରେ 'ଣ୍' ହୁଏ ।

ଅର୍ଜନମ୍ (ଅ ର୍ ଜ୍ ଅ ନ୍ ଅ ମ୍)
ଦର୍ଶନମ୍ (ଦ୍ ଅ ର୍ ଶ୍ ଅ ନ୍ ଅ ମ୍)

ଏହି ପଦମାନଙ୍କରେ 'ନ୍' ସ୍ଥାନରେ ଣ୍ ହୋଇ ନାହିଁ । ଯେହେତୁ ଏଥିରେ ଯଥାକ୍ରମେ 'ଜ୍' ଓ 'ଶ୍' ବ୍ୟବଧାନ ଅଛି ।

---

* ଉଦାହରଣର ଦକ୍ଷିଣପାର୍ଶ୍ୱରେ ବନ୍ଧନୀମଧ୍ୟରେ 'ନ୍'ର ଅବସ୍ଥିତି ଦେଖାଇ ଦିଆଯାଇଅଛି ।

ବୃଷନ୍ ଓ ନବାନ୍—ଏଠାରେ 'ନ୍' ପଦଶେଷରେ ଥିବାରୁ ତାହା ସ୍ଥାନରେ ଣ୍ ହେଲା ନାହିଁ ।

ପ୍ରଶ୍ନ

୧ । ସଂଶୋଧନ କର—ବାଲକେଣ ସହ କ୍ରୀଡ଼ । ରାମଃ ଦୈତ୍ୟାଣ୍ ହତବାନ୍ । ସମୁଦ୍ରାନାଂ ଜଳଂ ଲବଣାକ୍ତମ୍ । ଅହଂ ହସ୍ତେଣ ଖାଦାମି । ତ୍ୱଂ ମିଥ୍ୟା ବର୍ଜଣଂ କୁରୁ । ରୋଗେନ ସ ପୀଡ଼ିତଃ ।

## ଷତ୍ୱବିଧି (ସ୍ ସ୍ଥାନରେ ଷ୍ ହେବା ନିୟମ)

ମୁନିଷୁ (ମ୍ ଉ ନ୍ ଇ ସ୍ ଉ)
ଦିକ୍ଷୁ (ଦ୍ ଇ କ୍ ସ୍ ଉ)
ଚିକୀର୍ଷା (ଚ୍ ଇ କ୍ ଈ ର୍ ସ୍ ଆ)

ସୂତ୍ର—ଅ, ଆ ଭିନ୍ନ ସ୍ୱରବର୍ଣ୍ଣ (ଇ ଠାରୁ ଔ), 'କ୍' ଓ 'ର୍' ର ପରେ ଥିବା ପଦମଧ୍ୟବର୍ତ୍ତୀ ସନ୍ଧିଜାତ ଓ ପ୍ରତ୍ୟୟସମ୍ବନ୍ଧୀ 'ସ୍' ସ୍ଥାନରେ ଷ୍ ହୁଏ ।

ଧନୂଂଷି (ଧ୍ ଅ ନ୍ ଉଂ ସ୍ ଇ)
ଧନୁଃଷୁ (ଧ୍ ଅ ନ୍ ଉଃ ସ୍ ଉ)
ବ୍ୟଷୀଦତ୍ (ବ୍ ଇ ଅ ସ୍ ଈ ଦ୍ ଅ ତ୍)

ସୂତ୍ର—ଅନୁସ୍ୱାର, ବିସର୍ଗ ଓ ଲଙ୍ ପ୍ରଭୃତିର ଅଟ୍ ବ୍ୟବଧାନ ଥିଲେ ମଧ୍ୟ ପୂର୍ବୋକ୍ତ ନିୟମ ଅନୁସାରେ 'ସ୍' ସ୍ଥାନରେ 'ଷ୍' ହୁଏ ।

ଭୂମିସାତ୍ ଓ ଅଗ୍ନିସାତ୍ ପ୍ରଭୃତିରେ 'ସ୍' ସ୍ଥାନରେ 'ଷ୍' ହୁଏ ନାହିଁ ।

ସୂତ୍ର—ସାତ୍ ପ୍ରତ୍ୟୟସମ୍ବନ୍ଧୀ ସ୍ ସ୍ଥାନରେ ଷ୍ ହୁଏ ନାହିଁ ।

ପ୍ରଶ୍ନ

୧ । ସଂଶୋଧନ କର—ଲୋକେଷୁ ହରିଃ ଶ୍ରେଷ୍ଠଃ । ମମ ଜିଗମିସା ବର୍ତ୍ତତେ । କଥମତ୍ର ସ୍ଥାସ୍ୟସି । ଲତାସୁ ପୁଷ୍ପାନି ସନ୍ତି । କଂ କରୋଷି ।

# ଶବ୍ଦରୂପ

ବଚନଭେଦରେ ସାତଟି ବିଭକ୍ତିର ଏକୋଇଶଟି ଚିହ୍ନ । ଯଥା—

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ସୁ (ଃ) | ଔ | ଜସ୍ (ଅଃ) |
| ଦ୍ୱିତୀୟା | ଅମ୍ | ଔ | ଶସ୍ (ଅଃ) |
| ତୃତୀୟା | ଟା (ଆ) | ଭ୍ୟାମ୍ | ଭିସ୍ (ଭିଃ) |
| ଚତୁର୍ଥୀ | ଙେ (ଏ) | ଭ୍ୟାମ୍ | ଭ୍ୟସ୍ (ଭ୍ୟଃ) |
| ପଞ୍ଚମୀ | ଙସି (ଅଃ) | ଭ୍ୟାମ୍ | ଭ୍ୟସ୍ (ଭ୍ୟଃ) |
| ଷଷ୍ଠୀ | ଙସ୍ (ଅଃ) | ଓସ୍ (ଓଃ) | ଆମ୍ |
| ସପ୍ତମୀ | ଙି (ଇ) | ଓସ୍ (ଓଃ) | ସୁପ୍ (ସୁ) |
| ସମ୍ବୋଧନ | — | ଔ | ଜସ୍ (ଅଃ) |

## ପୁଂଲିଙ୍ଗ (ବିଶେଷ୍ୟ ଓ ବିଶେଷଣ)

[ବିଶେଷ୍ୟ ଓ ବିଶେଷଣମାନଙ୍କ ରୂପ ଏକ ପ୍ରକାର]

## ସ୍ୱରାନ୍ତ ଶବ୍ଦ— 'ଅ' କାରାନ୍ତ

ନର (ମନୁଷ୍ୟ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ନରଃ | ନରୌ | ନରାଃ |
| ଦ୍ୱିତୀୟା | ନରମ୍ | ନରୌ | ନରାନ୍ |
| ତୃତୀୟା | ନରେଣ | ନରାଭ୍ୟାମ୍ | ନରୈଃ |
| ଚତୁର୍ଥୀ | ନରାୟ | ନରାଭ୍ୟାମ୍ | ନରେଭ୍ୟଃ |
| ପଞ୍ଚମୀ | ନରାତ୍ | ନରାଭ୍ୟାମ୍ | ନରେଭ୍ୟଃ |
| ଷଷ୍ଠୀ | ନରସ୍ୟ | ନରୟୋଃ | ନରାଣାମ୍ |
| ସପ୍ତମୀ | ନରେ | ନରୟୋଃ | ନରେଷୁ |
| ସମ୍ବୋଧନ | ନର | ନରୌ | ନରାଃ |

ପର୍ବତ, ମେଘ, ମାର୍ଗ, ସମୁଦ୍ର, ବୃକ୍ଷ, କାଳ, ହସ୍ତ, ପାଦ, କେଶ, ଦନ୍ତ, ପଦାର୍ଥ, କଣ୍ଠ, ନକ୍ଷ, ମାମ, ରସ, ତରଙ୍ଗ, ପାକ, ରୋଗ,ମନ୍ତ୍ର,କରଣ, ଶୋକ, ଜନ୍ତୁ, ବନସ୍ତ, ଆନନ୍ଦ, ପୁରସ୍କାର, ପ୍ରଶ୍ନ, ଯତ୍ନ, ଯଜ୍ଞ, ଯାଗ, କଲ୍ଲୋଳ, ଦିବସ, ମିତ୍ର (ସୂର୍ଯ୍ୟ), ଖଗ, ଗଜ, ଆପଣ (ଦୋକାନ), ପଣ୍ଡିତ, ସୁନ୍ଦର, ଗତ, ପ୍ରାପ୍ତ, ଆପନ୍ନ, ହତ ଓ ଯୋଗ୍ୟ ପ୍ରଭୃତ ଶବ୍ଦର ରୂପ ନର ଶବ୍ଦର ରୂପ ପର ।

ଦାର (ସ୍ତ୍ରୀ), ପ୍ରାଣ (ଜୀବନ), ଲାଜ (ଖଇ), ଅକ୍ଷତ (ଅଭଙ୍ଗା ଅରୁଆ ଚାଉଳ) ଶବ୍ଦ ପୁଂଲିଙ୍ଗ ଓ ବହୁବଚନାନ୍ତ ।

| | ଦାର | ପ୍ରାଣ | ଲାଜ | ଅକ୍ଷତ |
|---|---|---|---|---|
| ପ୍ରଥମା | ଦାରାଃ | ପ୍ରାଣାଃ | ଲାଜାଃ | ଅକ୍ଷତାଃ |
| ଦ୍ୱିତୀୟା | ଦାରାନ୍ | ପ୍ରାଣାନ୍ | ଲାଜାନ୍ | ଅକ୍ଷତାନ୍ |
| ତୃତୀୟା | ଦାରୈଃ | ପ୍ରାଣୈଃ | ଲାଜୈଃ | ଅକ୍ଷତୈଃ |
| ଚତୁର୍ଥୀ | ଦାରେଭ୍ୟଃ | ପ୍ରାଣେଭ୍ୟଃ | ଲାଜେଭ୍ୟଃ | ଅକ୍ଷତେଭ୍ୟଃ |
| ପଞ୍ଚମୀ | ଦାରେଭ୍ୟଃ | ପ୍ରାଣେଭ୍ୟଃ | ଲାଜେଭ୍ୟଃ | ଅକ୍ଷତେଭ୍ୟଃ |
| ଷଷ୍ଠୀ | ଦାରାଣାମ୍ | ପ୍ରାଣାନାମ୍ | ଲାଜାନାମ୍ | ଅକ୍ଷତାନାମ୍ |
| ସପ୍ତମୀ | ଦାରେଷୁ | ପ୍ରାଣେଷୁ | ଲାଜେଷୁ | ଅକ୍ଷତେଷୁ |
| ସମ୍ବୋଧନ | ଦାରାଃ | ପ୍ରାଣାଃ | ଲାଜାଃ | ଅକ୍ଷତାଃ |

## 'ଆ' କାରାନ୍ତ

### ସୋମପା (ସୋମରସପାନକାରୀ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ସୋମପାଃ | ସୋମପୌ | ସୋମପାଃ |
| ଦ୍ୱିତୀୟା | ସୋମପାମ୍ | ସୋମପୌ | ସୋମପଃ |
| ତୃତୀୟା | ସୋମପା | ସୋମପାଭ୍ୟାମ୍ | ସୋମପାଭିଃ |
| ଚତୁର୍ଥୀ | ସୋମପେ | ସୋମପାଭ୍ୟାମ୍ | ସୋମପାଭ୍ୟଃ |
| ପଞ୍ଚମୀ | ସୋମପଃ | ସୋମପାଭ୍ୟାମ୍ | ସୋମପାଭ୍ୟଃ |

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ଷଷ୍ଠୀ | ସୋମପଃ | ସୋମପୋଃ | ସୋମପାମ୍ |
| ସପ୍ତମୀ | ସୋମପି | ସୋମପୋଃ | ସୋମପାସୁ |
| ସମ୍ବୋଧନ | ସୋମପାଃ | ସୋମପୌ | ସୋମପାଃ |

ବିଶ୍ୱପା (ବିଶ୍ୱପାଳକ), ମଧୁପା (ମଦ୍ୟପ), ଶଙ୍ଖଧ୍ମା (ଶଙ୍ଖବଜାଳି) ଓ ଗୋପା (ଗାଈଜଗୁଆଳ) ପ୍ରଭୃତି ଶବ୍ଦର ରୂପ ସୋମପା ଶବ୍ଦର ରୂପପରି ।

## 'ଇ' କାରାନ୍ତ

### ମୁନି (ଋଷି)

| | | | |
|---|---|---|---|
| ପ୍ରଥମା | ମୁନିଃ | ମୁନୀ | ମୁନୟଃ |
| ଦ୍ୱିତୀୟା | ମୁନିମ୍ | ମୁନୀ | ମୁନୀନ୍ |
| ତୃତୀୟା | ମୁନିନା | ମୁନିଭ୍ୟାମ୍ | ମୁନିଭିଃ |
| ଚତୁର୍ଥୀ | ମୁନୟେ | ମୁନିଭ୍ୟାମ୍ | ମୁନିଭ୍ୟଃ |
| ପଞ୍ଚମୀ | ମୁନେଃ | ମୁନିଭ୍ୟାମ୍ | ମୁନିଭ୍ୟଃ |
| ଷଷ୍ଠୀ | ମୁନେଃ | ମୁନ୍ୟୋଃ | ମୁନୀନାମ୍ |
| ସପ୍ତମୀ | ମୁନୌ | ମୁନ୍ୟୋଃ | ମୁନିଷୁ |
| ସମ୍ବୋଧନ | ମୁନେ | ମୁନୀ | ମୁନୟଃ |

ଗିରି, ରବି, କପି, କବି, ଶ୍ରୀପତି, ଅଧିପତି, ଅଗ୍ନି, ବିଧି, ମହୀପତି, ଇଷୁଧି (ତୂଣୀର), ଜଳଧି, ନିଧି, ସୁଗନ୍ଧି, ମନ୍ଦମତି ଓ ଦୁର୍ବୁଦ୍ଧି ପ୍ରଭୃତି ଶବ୍ଦର ରୂପ ମୁନି ଶବ୍ଦର ରୂପପରି ହୁଏ; ମାତ୍ର ଗିରି ଶବ୍ଦର ଷଷ୍ଠୀ ଏବଂ ସପ୍ତମୀ ଦ୍ୱିବଚନରେ 'ଗିର୍ଯ୍ୟୋଃ' ହୁଏ ।

### ସଖି (ବନ୍ଧୁ)

| | | | |
|---|---|---|---|
| ପ୍ରଥମା | ସଖା | ସଖାୟୌ | ସଖାୟଃ |
| ଦ୍ୱିତୀୟା | ସଖାୟମ୍ | ସଖାୟୌ | ସଖୀନ୍ |
| ତୃତୀୟା | ସଖ୍ୟା | ସଖିଭ୍ୟାମ୍ | ସଖିଭିଃ |
| ଚତୁର୍ଥୀ | ସଖ୍ୟେ | ସଖିଭ୍ୟାମ୍ | ସଖିଭ୍ୟଃ |

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପଞ୍ଚମୀ | ସଖ୍ୟୁଃ | ସଖିଭ୍ୟାମ୍ | ସଖିଭ୍ୟଃ |
| ଷଷ୍ଠୀ | ସଖ୍ୟୁଃ | ସଖ୍ୟୋଃ | ସଖୀନାମ୍ |
| ସପ୍ତମୀ | ସଖ୍ୟୌ | ସଖ୍ୟୋଃ | ସଖିଷୁ |
| ସମ୍ବୋଧନ | ସଖେ | ସଖାୟୌ | ସଖାୟଃ |

ପତି (ପ୍ରଭୁ, ସ୍ୱାମୀ)

| | | | |
|---|---|---|---|
| ପ୍ରଥମା | ପତିଃ | ପତୀ | ପତୟଃ |
| ଦ୍ୱିତୀୟା | ପତିମ୍ | ପତୀ | ପତୀନ୍ |
| ତୃତୀୟା | ପତ୍ୟା | ପତିଭ୍ୟାମ୍ | ପତିଭିଃ |
| ଚତୁର୍ଥୀ | ପତ୍ୟେ | ପତିଭ୍ୟାମ୍ | ପତିଭ୍ୟଃ |
| ପଞ୍ଚମୀ | ପତ୍ୟୁଃ | ପତିଭ୍ୟାମ୍ | ପତିଭ୍ୟଃ |
| ଷଷ୍ଠୀ | ପତ୍ୟୁଃ | ପତ୍ୟୋଃ | ପତୀନାମ୍ |
| ସପ୍ତମୀ | ପତ୍ୟୌ | ପତ୍ୟୋଃ | ପତିଷୁ |
| ସମ୍ବୋଧନ | ପତେ | ପତୀ | ପତୟଃ |

ପତି ଶବ୍ଦର ଅନ୍ୟ ଶବ୍ଦ ସହ ସମାସ ହେଲେ ଅର୍ଥାତ୍ ଭୂପତି ପ୍ରଭୃତି ଶବ୍ଦର ରୂପ ମୁନି ଶବ୍ଦର ରୂପ ପରି ହୁଏ ।

## 'ଈ' କାରାନ୍ତ

ସୁଧୀ (ସୁବୁଦ୍ଧିମାନ୍, ପଣ୍ଡିତ)

| | | | |
|---|---|---|---|
| ପ୍ରଥମା | ସୁଧୀଃ | ସୁଧିୟୌ | ସୁଧିୟଃ |
| ଦ୍ୱିତୀୟା | ସୁଧିୟମ୍ | ସୁଧିୟୌ | ସୁଧିୟଃ |
| ତୃତୀୟା | ସୁଧିୟା | ସୁଧୀଭ୍ୟାମ୍ | ସୁଧୀଭିଃ |
| ଚତୁର୍ଥୀ | ସୁଧିୟେ | ସୁଧୀଭ୍ୟାମ୍ | ସୁଧୀଭ୍ୟଃ |
| ପଞ୍ଚମୀ | ସୁଧିୟଃ | ସୁଧୀଭ୍ୟାମ୍ | ସୁଧୀଭ୍ୟଃ |
| ଷଷ୍ଠୀ | ସୁଧିୟଃ | ସୁଧିୟୋଃ | ସୁଧିୟାମ୍ |
| ସପ୍ତମୀ | ସୁଧିୟି | ସୁଧିୟୋଃ | ସୁଧୀଷୁ |
| ସମ୍ବୋଧନ | ସୁଧୀଃ | ସୁଧିୟୌ | ସୁଧିୟଃ |

ସୁଶ୍ରୀ (ସୁନ୍ଦର) ଶବ୍ଦର ରୂପ ସୁଧୀ ଶବ୍ଦର ରୂପ ପରି ହୁଏ ।

## 'ଉ' କାରାନ୍ତ

### ସାଧୁ (ସଜ୍ଜନ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ସାଧୁଃ | ସାଧୂ | ସାଧବଃ |
| ଦ୍ୱିତୀୟା | ସାଧୁମ୍ | ସାଧୂ | ସାଧୂନ୍ |
| ତୃତୀୟା | ସାଧୁନା | ସାଧୁଭ୍ୟାମ୍ | ସାଧୁଭିଃ |
| ଚତୁର୍ଥୀ | ସାଧବେ | ସାଧୁଭ୍ୟାମ୍ | ସାଧୁଭ୍ୟଃ |
| ପଞ୍ଚମୀ | ସାଧୋଃ | ସାଧୁଭ୍ୟାମ୍ | ସାଧୁଭ୍ୟଃ |
| ଷଷ୍ଠୀ | ସାଧୋଃ | ସାଧ୍ୱୋଃ | ସାଧୂନାମ୍ । |
| ସପ୍ତମୀ | ସାଧୌ | ସାଧ୍ୱୋଃ | ସାଧୁଷୁ |
| ସମ୍ବୋଧନ | ସାଧୋ | ସାଧୂ | ସାଧବଃ |

ବସ୍ତୁ, ଶମ୍ଭୁ, ବାୟୁ, ହେତୁ, ସେତୁ (ବନ୍ଧ, ପୋଲ), ଶତ୍ରୁ, ଭାନୁ, ବନ୍ଧୁ, ଋତୁ, କତୁ (ଯଜ୍ଞ), ମୃଦୁ, ତନୁ, ଲଘୁ, ଚିକୀର୍ଷୁ ଓ ଜିଗମିଷୁ ପ୍ରଭୃତି ଶବ୍ଦର ରୂପ ସାଧୁ ଶବ୍ଦର ରୂପ ପରି ହୁଏ; ମାତ୍ର ତରୁ, ମେରୁ ଓ ଗୁରୁ ପ୍ରଭୃତି ଶବ୍ଦର ରୂପ ସାଧୁ ଶବ୍ଦର ରୂପ ପରି ହେଲେ ମଧ୍ୟ ଏମାନଙ୍କର ଷଷ୍ଠୀ ଓ ସପ୍ତମୀ ଦ୍ୱିବଚନରେ ତର୍ବୋଃ, ମେର୍ବୋଃ ପ୍ରଭୃତି ହୁଏ ।

### ଅସୁ (ଜୀବନ) ଶବ୍ଦ ପୁଂଲିଙ୍ଗ ଓ ବହୁବଚନାନ୍ତ ।

| | | | |
|---|---|---|---|
| ପ୍ରଥମା | ଅସବଃ | ପଞ୍ଚମୀ | ଅସୁଭ୍ୟଃ |
| ଦ୍ୱିତୀୟା | ଅସୂନ୍ | ଷଷ୍ଠୀ | ଅସୂନାମ୍ |
| ତୃତୀୟା | ଅସୁଭିଃ | ସପ୍ତମୀ | ଅସୁଷୁ |
| ଚତୁର୍ଥୀ | ଅସୁଭ୍ୟଃ | ସମ୍ବୋଧନ | ଅସବଃ |

## 'ଊ' କାରାନ୍ତ

### ସ୍ୱୟମ୍ଭୂ (ବ୍ରହ୍ମା)

| | | | |
|---|---|---|---|
| ପ୍ରଥମା | ସ୍ୱୟମ୍ଭୂଃ | ସ୍ୱୟମ୍ଭୁବୌ | ସ୍ୱୟମ୍ଭୁବଃ |
| ଦ୍ୱିତୀୟା | ସ୍ୱୟମ୍ଭୁବମ୍ | ସ୍ୱୟମ୍ଭୁବୌ | ସ୍ୱୟମ୍ଭୁବଃ |
| ତୃତୀୟା | ସ୍ୱୟମ୍ଭୁବା | ସ୍ୱୟମ୍ଭୂଭ୍ୟାମ୍ | ସ୍ୱୟମ୍ଭୂଭିଃ |
| ଚତୁର୍ଥୀ | ସ୍ୱୟମ୍ଭୁବେ | ସ୍ୱୟମ୍ଭୂଭ୍ୟାମ୍ | ସ୍ୱୟମ୍ଭୂଭ୍ୟଃ |

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପଞ୍ଚମୀ | ସ୍ୱୟମ୍ଭୁବଃ | ସ୍ୱୟମ୍ଭୂଭ୍ୟାମ୍ | ସ୍ୱୟମ୍ଭୂଭ୍ୟଃ |
| ଷଷ୍ଠୀ | ସ୍ୱୟମ୍ଭୁବଃ | ସ୍ୱୟମ୍ଭୁବୋଃ | ସ୍ୱୟମ୍ଭୁବାମ୍ |
| ସପ୍ତମୀ | ସ୍ୱୟମ୍ଭୁବି | ସ୍ୱୟମ୍ଭୁବୋଃ | ସ୍ୱୟମ୍ଭୂଷୁ |
| ସମ୍ବୋଧନ | ସ୍ୱୟମ୍ଭୂଃ | ସ୍ୱୟମ୍ଭୁବୌ | ସ୍ୱୟମ୍ଭୁବଃ |

## 'ଋ' କାରାନ୍ତ

### ଦାତୃ (ଦାତା)

| | | | |
|---|---|---|---|
| ପ୍ରଥମା | ଦାତା | ଦାତାରୌ | ଦାତାରଃ |
| ଦ୍ୱିତୀୟା | ଦାତାରମ୍ | ଦାତାରୌ | ଦାତୄନ୍ |
| ତୃତୀୟା | ଦାତ୍ରା | ଦାତୃଭ୍ୟାମ୍ | ଦାତୃଭିଃ |
| ଚତୁର୍ଥୀ | ଦାତ୍ରେ | ଦାତୃଭ୍ୟାମ୍ | ଦାତୃଭ୍ୟଃ |
| ପଞ୍ଚମୀ | ଦାତୁଃ | ଦାତୃଭ୍ୟାମ୍ | ଦାତୃଭ୍ୟଃ |
| ଷଷ୍ଠୀ | ଦାତୁଃ | ଦାତ୍ରୋଃ | ଦାତୄଣାମ୍ |
| ସପ୍ତମୀ | ଦାତରି | ଦାତ୍ରୋଃ | ଦାତୃଷୁ |
| ସମ୍ବୋଧନ | ଦାତଃ | ଦାତାରୌ | ଦାତାରଃ |

ଧାତୃ, ବଧାତୃ, କର୍ତ୍ତୃ, ଜେତୃ, ହନ୍ତୃ, ଚେତୃ, ଦ୍ରଷ୍ଟୃ, ଶ୍ରୋତୃ ଓ ନେତୃ ପ୍ରଭୃତି ଶବ୍ଦର ରୂପ ଦାତୃ ଶବ୍ଦର ରୂପ ପରି ।

### ପିତୃ (ବାପା)

| | | | |
|---|---|---|---|
| ପ୍ରଥମା | ପିତା | ପିତରୌ | ପିତରଃ |
| ଦ୍ୱିତୀୟା | ପିତରମ୍ | ପିତରୌ | ପିତୄନ୍ |
| ତୃତୀୟା | ପିତ୍ରା | ପିତୃଭ୍ୟାମ୍ | ପିତୃଭିଃ |
| ଚତୁର୍ଥୀ | ପିତ୍ରେ | ପିତୃଭ୍ୟାମ୍ | ପିତୃଭ୍ୟଃ |
| ପଞ୍ଚମୀ | ପିତୁଃ | ପିତୃଭ୍ୟାମ୍ | ପିତୃଭ୍ୟଃ |
| ଷଷ୍ଠୀ | ପିତୁଃ | ପିତ୍ରୋଃ | ପିତୄଣାମ୍ |
| ସପ୍ତମୀ | ପିତରି | ପିତ୍ରୋଃ | ପିତୃଷୁ |
| ସମ୍ବୋଧନ | ପିତଃ | ପିତରୌ | ପିତରଃ |

ଭ୍ରାତୃ, ଜାମାତୃ (ଜୋଇଁ), ଦେବୃ (ଦେବର) ଓ ନୃ (ନର) ପ୍ରଭୃତି ଶବ୍ଦର ରୂପ ପିତୃ ଶବ୍ଦର ରୂପ ପରି ।

## ହସନ୍ତ ଶବ୍ଦ—'ଜ୍' କାରାନ୍ତ

### ବଣିଜ୍ (ବେପାରି)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ବଣିକ୍ | ବଣିଜୌ | ବଣିଜଃ |
| ଦ୍ୱିତୀୟା | ବଣିଜମ୍ | ବଣିଜୌ | ବଣିଜଃ |
| ତୃତୀୟା | ବଣିଜା | ବଣିଗ୍‌ଭ୍ୟାମ୍ | ବଣିଗ୍‌ଭିଃ |
| ଚତୁର୍ଥୀ | ବଣିଜେ | ବଣିଗ୍‌ଭ୍ୟାମ୍ | ବଣିଗ୍‌ଭ୍ୟଃ |
| ପଞ୍ଚମୀ | ବଣିଜଃ | ବଣିଗ୍‌ଭ୍ୟାମ୍ | ବଣିଗ୍‌ଭ୍ୟଃ |
| ଷଷ୍ଠୀ | ବଣିଜଃ | ବଣିଜୋଃ | ବଣିଜାମ୍ |
| ସପ୍ତମୀ | ବଣିଜି | ବଣିଜୋଃ | ବଣିକ୍ଷୁ |
| ସମ୍ବୋଧନ | ବଣିକ୍ | ବଣିଜୌ | ବଣିଜଃ |

ଭିଷକ୍ (ବୈଦ୍ୟ), ଋତ୍ୱିକ୍ (ଯାଜ୍ଞିକ) ଓ ଭୂଭୁଜ୍ (ରାଜା) ପ୍ରଭୃତି ଶବ୍ଦର ରୂପ ବଣିଜ୍ ଶବ୍ଦର ରୂପ ପରି ।

### ସମ୍ରାଜ୍ (ରାଜା)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ସମ୍ରାଟ୍ | ସମ୍ରାଜୌ | ସମ୍ରାଜଃ |
| ଦ୍ୱିତୀୟା | ସମ୍ରାଜମ୍ | ସମ୍ରାଜୌ | ସମ୍ରାଜଃ |
| ତୃତୀୟା | ସମ୍ରାଜା | ସମ୍ରାଡ୍‌ଭ୍ୟାମ୍ | ସମ୍ରାଡ୍‌ଭିଃ |
| ଚତୁର୍ଥୀ | ସମ୍ରାଜେ | ସମ୍ରାଡ୍‌ଭ୍ୟାମ୍ | ସମ୍ରାଡ୍‌ଭ୍ୟଃ |
| ପଞ୍ଚମୀ | ସମ୍ରାଜଃ | ସମ୍ରାଡ୍‌ଭ୍ୟାମ୍ | ସମ୍ରାଡ୍‌ଭ୍ୟଃ |
| ଷଷ୍ଠୀ | ସମ୍ରାଜଃ | ସମ୍ରାଜୋଃ | ସମ୍ରାଜାମ୍ |
| ସପ୍ତମୀ | ସମ୍ରାଜି | ସମ୍ରାଜୋଃ | ସମ୍ରାଟ୍‌ସୁ |
| ସମ୍ବୋଧନ | ସମ୍ରାଟ୍ | ସମ୍ରାଜୌ | ସମ୍ରାଜଃ |

ଦେବରାଜ୍ (ଇନ୍ଦ୍ର) ଶବ୍ଦର ରୂପ ସମ୍ରାଜ୍ ଶବ୍ଦର ରୂପ ପରି ।

## 'ତ୍' କାରାନ୍ତ

### ଭୂଭୃତ୍ (ରାଜା, ପର୍ବତ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଭୂଭୃତ୍ | ଭୂଭୃତୌ | ଭୂଭୃତଃ |
| ଦ୍ୱିତୀୟା | ଭୂଭୃତମ୍ | ଭୂଭୃତୌ | ଭୂଭୃତଃ |

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ତୃତୀୟା | ଭୂଭୃତା | ଭୂଭୃଦ୍ଭ୍ୟାମ୍ | ଭୂଭୃଦ୍ଭିଃ |
| ଚତୁର୍ଥୀ | ଭୂଭୃତେ | ଭୂଭୃଦ୍ଭ୍ୟାମ୍ | ଭୂଭୃଦ୍ଭ୍ୟଃ |
| ପଞ୍ଚମୀ | ଭୂଭୃତଃ | ଭୂଭୃଦ୍ଭ୍ୟାମ୍ | ଭୂଭୃଦ୍ଭ୍ୟଃ |
| ଷଷ୍ଠୀ | ଭୂଭୃତଃ | ଭୂଭୃତୋଃ | ଭୂଭୃତାମ୍ |
| ସପ୍ତମୀ | ଭୂଭୃତି | ଭୂଭୃତୋଃ | ଭୂଭୃତ୍ସୁ |
| ସମ୍ବୋଧନ | ଭୂଭୃତ୍ | ଭୂଭୃତୌ | ଭୂଭୃତଃ |

ଇନ୍ଦ୍ରଜିତ୍, କର୍ମକୃତ୍, ମରୁତ୍, ମହୀଭୃତ୍, ବୃହତ୍, ଦଦତ୍, ଶାସତ୍, ଜାଗ୍ରତ୍ ଓ ବିଭ୍ୟତ୍ ପ୍ରଭୃତି ଶବ୍ଦର ରୂପ ଭୂଭୃତ୍ ଶବ୍ଦର ରୂପ ପରି ।

ଗଚ୍ଛତ୍ (ଯାଉଁ ଯାଉଁ, ଯାଉଥିବା)

| | | | |
|---|---|---|---|
| ପ୍ରଥମା | ଗଚ୍ଛନ୍ | ଗଚ୍ଛନ୍ତୌ | ଗଚ୍ଛନ୍ତଃ |
| ଦ୍ୱିତୀୟା | ଗଚ୍ଛନ୍ତମ୍ | ଗଚ୍ଛନ୍ତୌ | ଗଚ୍ଛତଃ |
| ତୃତୀୟା | ଗଚ୍ଛତା | ଗଚ୍ଛଦ୍ଭ୍ୟାମ୍ | ଗଚ୍ଛଦ୍ଭିଃ |
| ଚତୁର୍ଥୀ | ଗଚ୍ଛତେ | ଗଚ୍ଛଦ୍ଭ୍ୟାମ୍ | ଗଚ୍ଛଦ୍ଭ୍ୟଃ |
| ପଞ୍ଚମୀ | ଗଚ୍ଛତଃ | ଗଚ୍ଛଦ୍ଭ୍ୟାମ୍ | ଗଚ୍ଛଦ୍ଭ୍ୟଃ |
| ଷଷ୍ଠୀ | ଗଚ୍ଛତଃ | ଗଚ୍ଛତୋଃ | ଗଚ୍ଛତାମ୍ |
| ସପ୍ତମୀ | ଗଚ୍ଛତି | ଗଚ୍ଛତୋଃ | ଗଚ୍ଛତ୍ସୁ |
| ସମ୍ବୋଧନ | ଗଚ୍ଛନ୍ | ଗଚ୍ଛନ୍ତୌ | ଗଚ୍ଛନ୍ତଃ |

ଧାବତ୍, ହସତ୍, ଗାୟତ୍, ପଶ୍ୟତ୍, ରୁଦତ୍, ପଠିଷ୍ୟତ୍ ଓ କରିଷ୍ୟତ୍ ପ୍ରଭୃତି ଶବ୍ଦର ରୂପ ଗଚ୍ଛତ୍ ଶବ୍ଦର ରୂପ ପରି ।

ଶ୍ରୀମତ୍ (ଶ୍ରୀସମ୍ପନ୍ନ)

| | | | |
|---|---|---|---|
| ପ୍ରଥମା | ଶ୍ରୀମାନ୍ | ଶ୍ରୀମନ୍ତୌ | ଶ୍ରୀମନ୍ତଃ |

ଅନ୍ୟ ବିଭକ୍ତିମାନଙ୍କରେ ଗଚ୍ଛତ୍ ଶବ୍ଦର ରୂପ ପରି ।

ଭଗବତ୍, ଭବତ୍, ହନୁମତ୍, ସତ୍ୟବତ୍, ଗୁଣବତ୍, କୃତବତ୍, ଯାବତ୍, ତାବତ୍, କିୟତ୍ ଓ ଇୟତ୍ ପ୍ରଭୃତି ଶବ୍ଦର ରୂପ ଶ୍ରୀମତ୍ ଶବ୍ଦର ରୂପ ପରି

### ମହତ୍ (ବଡ଼)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ମହାନ୍ | ମହାନ୍ତୌ | ମହାନ୍ତଃ |
| ଦ୍ୱିତୀୟା | ମହାନ୍ତମ୍ | ମହାନ୍ତୌ | ମହତଃ |
| ସମ୍ବୋଧନ | ମହନ୍ | ମହାନ୍ତୌ | ମହାନ୍ତଃ |

ଅନ୍ୟ ବିଭକ୍ତିମାନଙ୍କରେ ଶ୍ରୀମତ୍ ଶବ୍ଦର ରୂପ ପରି ।

## 'ଦ୍' କାରାନ୍ତ

### ସୁହୃଦ୍ (ବନ୍ଧୁ)

| | | | |
|---|---|---|---|
| ପ୍ରଥମା | ସୁହୃତ୍ | ସୁହୃଦୌ | ସୁହୃଦଃ |
| ଦ୍ୱିତୀୟା | ସୁହୃଦମ୍ | ସୁହୃଦୌ | ସୁହୃଦଃ |
| ତୃତୀୟା | ସୁହୃଦା | ସୁହୃଦ୍ଭ୍ୟାମ୍ | ସୁହୃଦ୍ଭିଃ |
| ଚତୁର୍ଥୀ | ସୁହୃଦେ | ସୁହୃଦ୍ଭ୍ୟାମ୍ | ସୁହୃଦ୍ଭ୍ୟଃ |
| ପଞ୍ଚମୀ | ସୁହୃଦଃ | ସୁହୃଦ୍ଭ୍ୟାମ୍ | ସୁହୃଦ୍ଭ୍ୟଃ |
| ଷଷ୍ଠୀ | ସୁହୃଦଃ | ସୁହୃଦୋଃ | ସୁହୃଦାମ୍ |
| ସପ୍ତମୀ | ସୁହୃଦି | ସୁହୃଦୋଃ | ସୁହୃତ୍ସୁ |
| ସମ୍ବୋଧନ | ସୁହୃତ୍ | ସୁହୃଦୌ | ସୁହୃଦଃ |

ସଭାସଦ୍ (ସଭ୍ୟ), ଦିବଷଦ୍ (ଦେବତା) ଓ ଜ୍ୟୋତିର୍ବିଦ୍ ପ୍ରଭୃତି ଶବ୍ଦର ରୂପ ସୁହୃଦ୍ ଶବ୍ଦର ରୂପ ପରି ।

## 'ନ୍' କାରାନ୍ତ

### ମହିମନ୍ (ମହତ୍ତ୍ୱ)

| | | | |
|---|---|---|---|
| ପ୍ରଥମା | ମହିମା | ମହିମାନୌ | ମହିମାନଃ |
| ଦ୍ୱିତୀୟା | ମହିମାନମ୍ | ମହିମାନୌ | ମହିମ୍ନଃ |
| ତୃତୀୟା | ମହିମ୍ନା | ମହିମଭ୍ୟାମ୍ | ମହିମଭିଃ |
| ଚତୁର୍ଥୀ | ମହିମ୍ନେ | ମହିମଭ୍ୟାମ୍ | ମହିମଭ୍ୟଃ |
| ପଞ୍ଚମୀ | ମହିମ୍ନଃ | ମହିମଭ୍ୟାମ୍ | ମହିମଭ୍ୟଃ |
| ଷଷ୍ଠୀ | ମହିମ୍ନଃ | ମହିମ୍ନୋଃ | ମହିମ୍ନାମ୍ |
| ସପ୍ତମୀ | ମହିମ୍ନି, ମହିମନି | ମହିମ୍ନୋଃ | ମହିମସୁ |
| ସମ୍ବୋଧନ | ମହିମନ୍ | ମହିମାନୌ | ମହିମାନଃ |

ଲଘିମନ୍, ଗରିମନ୍, ପ୍ରେମନ୍ ଓ ମୂର୍ଦ୍ଧନ୍ ପ୍ରଭୃତି ଶବ୍ଦର ରୂପ ମହିମନ୍ ଶବ୍ଦର ରୂପ ପରି ।

### ଆତ୍ମନ୍ (ନକେ) ✓

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଆତ୍ମା | ଆତ୍ମାନୌ | ଆତ୍ମାନଃ |
| ଦ୍ୱିତୀୟା | ଆତ୍ମାନମ୍ | ଆତ୍ମାନୌ | ଆତ୍ମନଃ |
| ତୃତୀୟା | ଆତ୍ମନା | ଆତ୍ମଭ୍ୟାମ୍ | ଆତ୍ମଭିଃ |
| ଚତୁର୍ଥୀ | ଆତ୍ମନେ | ଆତ୍ମଭ୍ୟାମ୍ | ଆତ୍ମଭ୍ୟଃ |
| ପଞ୍ଚମୀ | ଆତ୍ମନଃ | ଆତ୍ମଭ୍ୟାମ୍ | ଆତ୍ମଭ୍ୟଃ |
| ଷଷ୍ଠୀ | ଆତ୍ମନଃ | ଆତ୍ମନୋଃ | ଆତ୍ମନାମ୍ |
| ସପ୍ତମୀ | ଆତ୍ମନି | ଆତ୍ମନୋଃ | ଆତ୍ମସୁ |
| ସମ୍ବୋଧନ | ଆତ୍ମନ୍ | ଆତ୍ମାନୌ | ଆତ୍ମାନଃ |

ବ୍ରହ୍ମନ୍, ଅଶ୍ମନ୍ (ପଥର), ପରମାତ୍ମନ୍, ଧର୍ମାତ୍ମନ୍ ଓ ଜୀବାତ୍ମନ୍ ପ୍ରଭୃତି ଶବ୍ଦର ରୂପ ଆତ୍ମନ୍ ଶବ୍ଦର ରୂପ ପରି ।

### ରାଜନ୍ (ରାଜା) ✓

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ରାଜା | ରାଜାନୌ | ରାଜାନଃ |
| ଦ୍ୱିତୀୟା | ରାଜାନମ୍ | ରାଜାନୌ | ରାଜ୍ଞଃ |
| ତୃତୀୟା | ରାଜ୍ଞା | ରାଜଭ୍ୟାମ୍ | ରାଜଭିଃ |
| ଚତୁର୍ଥୀ | ରାଜ୍ଞେ | ରାଜଭ୍ୟାମ୍ | ରାଜଭ୍ୟଃ |
| ପଞ୍ଚମୀ | ରାଜ୍ଞଃ | ରାଜଭ୍ୟାମ୍ | ରାଜଭ୍ୟଃ |
| ଷଷ୍ଠୀ | ରାଜ୍ଞଃ | ରାଜ୍ଞୋଃ | ରାଜ୍ଞାମ୍ |
| ସପ୍ତମୀ | ରାଜ୍ଞି, ରାଜନି | ରାଜ୍ଞୋଃ | ରାଜସୁ |
| ସମ୍ବୋଧନ | ରାଜନ୍ | ରାଜାନୌ | ରାଜାନଃ |

### ଯୁବନ୍ (ଯୁବକ) ✓

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଯୁବା | ଯୁବାନୌ | ଯୁବାନଃ |
| ଦ୍ୱିତୀୟା | ଯୁବାନମ୍ | ଯୁବାନୌ | ଯୂନଃ |

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ତୃତୀୟା | ଯୂନା | ଯୁବଭ୍ୟାମ୍ | ଯୁବଭିଃ |
| ଚତୁର୍ଥୀ | ଯୂନେ | ଯୁବଭ୍ୟାମ୍ | ଯୁବଭ୍ୟଃ |
| ପଞ୍ଚମୀ | ଯୂନଃ | ଯୁବଭ୍ୟାମ୍ | ଯୁବଭ୍ୟଃ |
| ଷଷ୍ଠୀ | ଯୂନଃ | ଯୂନୋଃ | ଯୂନାମ୍ |
| ସପ୍ତମୀ | ଯୂନି | ଯୂନୋଃ | ଯୁବସୁ |
| ସମ୍ବୋଧନ | ଯୁବନ୍ | ଯୁବାନୌ | ଯୁବାନଃ |

ଶ୍ୱନ୍ (କୁକ୍କୁର)

| | | | |
|---|---|---|---|
| ପ୍ରଥମା | ଶ୍ୱା | ଶ୍ୱାନୌ | ଶ୍ୱାନଃ |
| ଦ୍ୱିତୀୟା | ଶ୍ୱାନମ୍ | ଶ୍ୱାନୌ | ଶୁନଃ |
| ତୃତୀୟା | ଶୁନା | ଶ୍ୱଭ୍ୟାମ୍ | ଶ୍ୱଭିଃ |
| ଚତୁର୍ଥୀ | ଶୁନେ | ଶ୍ୱଭ୍ୟାମ୍ | ଶ୍ୱଭ୍ୟଃ |
| ପଞ୍ଚମୀ | ଶୁନଃ | ଶ୍ୱଭ୍ୟାମ୍ | ଶ୍ୱଭ୍ୟଃ |
| ଷଷ୍ଠୀ | ଶୁନଃ | ଶୁନୋଃ | ଶୁନାମ୍ |
| ସପ୍ତମୀ | ଶୁନି | ଶୁନୋଃ | ଶ୍ୱସୁ |
| ସମ୍ବୋଧନ | ଶ୍ୱନ୍ | ଶ୍ୱାନୌ | ଶ୍ୱାନଃ |

ଗୁଣିନ୍ (ଗୁଣବାନ୍)

| | | | |
|---|---|---|---|
| ପ୍ରଥମା | ଗୁଣୀ | ଗୁଣିନୌ | ଗୁଣିନଃ |
| ଦ୍ୱିତୀୟା | ଗୁଣିନମ୍ | ଗୁଣିନୌ | ଗୁଣିନଃ |
| ତୃତୀୟା | ଗୁଣିନା | ଗୁଣିଭ୍ୟାମ୍ | ଗୁଣିଭିଃ |
| ଚତୁର୍ଥୀ | ଗୁଣିନେ | ଗୁଣିଭ୍ୟାମ୍ | ଗୁଣିଭ୍ୟଃ |
| ପଞ୍ଚମୀ | ଗୁଣିନଃ | ଗୁଣିଭ୍ୟାମ୍ | ଗୁଣିଭ୍ୟଃ |
| ଷଷ୍ଠୀ | ଗୁଣିନଃ | ଗୁଣିନୋଃ | ଗୁଣିନାମ୍ |
| ସପ୍ତମୀ | ଗୁଣିନି | ଗୁଣିନୋଃ | ଗୁଣିଷୁ |
| ସମ୍ବୋଧନ | ଗୁଣିନ୍ | ଗୁଣିନୌ | ଗୁଣିନଃ |

କରିନ୍, କେଶରିନ୍, ହସ୍ତିନ୍, ରୋଗିନ୍, ଧନିନ୍, ତପସ୍ୱିନ୍, ଯଶସ୍ୱିନ୍ ଓ ସତ୍ୟବାଦିନ୍ ପ୍ରଭୃତି ଶବ୍ଦର ରୂପ ଗୁଣିନ୍ ଶବ୍ଦର ରୂପ ପରି ।

### ପଥିନ୍ (ବାଟ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ପନ୍ଥାଃ | ପନ୍ଥାନୌ | ପନ୍ଥାନଃ |
| ଦ୍ୱିତୀୟା | ପନ୍ଥାନମ୍ | ପନ୍ଥାନୌ | ପଥଃ |
| ତୃତୀୟା | ପଥା | ପଥିଭ୍ୟାମ୍ | ପଥିଭିଃ |
| ଚତୁର୍ଥୀ | ପଥେ | ପଥିଭ୍ୟାମ୍ | ପଥିଭ୍ୟଃ |
| ପଞ୍ଚମୀ | ପଥଃ | ପଥିଭ୍ୟାମ୍ | ପଥିଭ୍ୟଃ |
| ଷଷ୍ଠୀ | ପଥଃ | ପଥୋଃ | ପଥାମ୍ |
| ସପ୍ତମୀ | ପଥି | ପଥୋଃ | ପଥିଷୁ |
| ସମ୍ବୋଧନ | ପନ୍ଥାଃ | ପନ୍ଥାନୌ | ପନ୍ଥାନଃ |

## 'ସ୍' କାରାନ୍ତ

### ବେଧସ୍ (ବ୍ରହ୍ମା)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ବେଧାଃ | ବେଧସୌ | ବେଧସଃ |
| ଦ୍ୱିତୀୟା | ବେଧସମ୍ | ବଧସୌ | ବେଧସଃ |
| ତୃତୀୟା | ବେଧସା | ବେଧୋଭ୍ୟାମ୍ | ବେଧୋଭିଃ |
| ଚତୁର୍ଥୀ | ବେଧସେ | ବେଧୋଭ୍ୟାମ୍ | ବେଧୋଭ୍ୟଃ |
| ପଞ୍ଚମୀ | ବେଧସଃ | ବେଧୋଭ୍ୟାମ୍ | ବେଧୋଭ୍ୟଃ |
| ଷଷ୍ଠୀ | ବୋଧସଃ | ବେଧସୋଃ | ବେଧସାମ୍ |
| ସପ୍ତମୀ | ବେଧସି | ବେଧସୋଃ | ବେଧଃସୁ |
| ସମ୍ବୋଧନ | ବେଧଃ | ବେଧସୌ | ବେଧସଃ |

ଚନ୍ଦ୍ରମସ୍, ପୁରୋଧସ୍ (ପୁରୋହିତ), ପ୍ରଚେତସ୍ (ବରୁଣ), ଦୁଷ୍ଟମନସ୍, ଦୁର୍ମେଧସ୍ ଓ ଦ୍ୱିଶିରସ୍ ପ୍ରଭୃତ ଶବ୍ଦର ରୂପ ବେଧସ୍ ଶବ୍ଦର ରୂପ ପରି ।

### ବିଦ୍ୱସ୍ (ପଣ୍ଡିତ) ✓

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ବିଦ୍ୱାନ୍ | ବିଦ୍ୱାଂସୌ | ବିଦ୍ୱାଂସଃ |
| ଦ୍ୱିତୀୟା | ବିଦ୍ୱାଂସମ୍ | ବିଦ୍ୱାଂସୌ | ବିଦୁଷଃ |
| ତୃତୀୟା | ବିଦୁଷା | ବିଦ୍ୱଦ୍ଭ୍ୟାମ୍ | ବିଦ୍ୱଦ୍ଭିଃ |

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ଚତୁର୍ଥୀ | ବିଦୁଷେ | ବିଦ୍ୱଦ୍ଭ୍ୟାମ୍ | ବିଦ୍ୱଦ୍ଭ୍ୟଃ |
| ପଞ୍ଚମୀ | ବିଦୁଷଃ | ବିଦ୍ୱଦ୍ଭ୍ୟାମ୍ | ବିଦ୍ୱଦ୍ଭ୍ୟଃ |
| ଷଷ୍ଠୀ | ବିଦୁଷଃ | ବିଦୁଷୋଃ | ବିଦୁଷାମ୍ |
| ସପ୍ତମୀ | ବିଦୁଷି | ବିଦୁଷୋଃ | ବିଦ୍ୱତ୍ସୁ |
| ସମ୍ବୋଧନ | ବିଦ୍ୱନ୍ | ବିଦ୍ୱାଂସୌ | ବିଦ୍ୱାଂସଃ |

ଗରୀୟସ୍ (ଅଧିକ ଗୁରୁ)

| | | | |
|---|---|---|---|
| ପ୍ରଥମା | ଗରୀୟାନ୍ | ଗରୀୟାଂସୌ | ଗରୀୟାଂସଃ |
| ଦ୍ୱିତୀୟା | ଗରୀୟାଂସମ୍ | ଗରୀୟାଂସୌ | ଗରୀୟସଃ |
| ସମ୍ବୋଧନ | ଗରୀୟନ୍ | ଗରୀୟାଂସୌ | ଗରୀୟାଂସଃ |

ଅନ୍ୟ ବିଭକ୍ତିମାନଙ୍କରେ ବେଧସ୍ ଶବ୍ଦର ରୂପ ପରି ।

ଲଘୀୟସ୍, ମହୀୟସ୍, କନୀୟସ୍, ଜ୍ୟାୟସ୍ ଓ ଶ୍ରେୟସ୍ ପ୍ରଭୃତି ଶବ୍ଦର ରୂପ ଗରୀୟସ୍ ଶବ୍ଦର ରୂପ ପରି ।

## ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର—ରାମ ଆଜି ଦୋକାନକୁ ଯାଇଥିଲା । ସୂର୍ଯ୍ୟଙ୍କ କିରଣ ରୋଗର ଶତ୍ରୁ । ବୁଢ଼ା ଲୋକଟିର ନିର୍ଲଜ୍ଜ ପ୍ରାଣ ଯାଉ ନାହିଁ । କୋଇଁକି ଶ୍ୱଶୁର ଭଲପାଏ । ବେପାରୀମାନେ ଦିବାବେଳେ ଚୋରକୁ ଦେଖିଲେ । ହନୁମାନକୁ ଅସୁରମାନେ ଧରିଥିଲେ । ପଥର ଉପରେ ଯୁବକ ଦୁଇଟି ବସିଅଛନ୍ତି । ବ୍ରହ୍ମାଙ୍କ ପୁଅ ନାରଦ ସ୍ୱର୍ଗକୁ ଗଲେ । ଦୁଷ୍ଟମନା ଲୋକମାନେ ପାପୀ ଅଟନ୍ତି ।

୨ । ସଂଶୋଧନ କର—ପଥେ ବଣିକାଃ ଗଚ୍ଛନ୍ତୁ । ପୁରୋଧାସ୍ୟାଃ ଉପଦେଶାନ୍ ଶୃଣୁ । ଗୁଣବତାନ୍ ନରାନ୍ ଆହ୍ୱୟସ୍ୱ । ରାଜା ନରାନ୍ ଶାସନ୍ ଆନନ୍ଦିତଂ ଭବତି । ଭାନୁଷ୍ୟ ତାପଃ ପ୍ରଖରମ୍ । ବ୍ୟାଧଃ ପକ୍ଷିନାଂ ପ୍ରାଣଂ ହନ୍ତୁ । ହନୁମାନସ୍ୟ ପିତା ପବନଃ । ଶ୍ୱାନଃ ଗର୍ଜତି ।

---

# ସ୍ତ୍ରୀଲିଙ୍ଗ (ବିଶେଷ୍ୟ ଓ ବିଶେଷଣ)

## ସ୍ୱରାନ୍ତ ଶବ୍ଦ—'ଆ' କାରାନ୍ତ

### ଲତା

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଲତା | ଲତେ | ଲତାଃ |
| ଦ୍ୱିତୀୟା | ଲତାମ୍ | ଲତେ | ଲତାଃ |
| ତୃତୀୟା | ଲତୟା | ଲତାଭ୍ୟାମ୍ | ଲତାଭିଃ |
| ଚତୁର୍ଥୀ | ଲତାୟୈ | ଲତାଭ୍ୟାମ୍ | ଲତାଭ୍ୟଃ |
| ପଞ୍ଚମୀ | ଲତାୟାଃ | ଲତାଭ୍ୟାମ୍ | ଲତାଭ୍ୟଃ |
| ଷଷ୍ଠୀ | ଲତାୟାଃ | ଲତୟୋଃ | ଲତାନାମ୍ |
| ସପ୍ତମୀ | ଲତାୟାମ୍ | ଲତୟୋଃ | ଲତାସୁ |
| ସମ୍ବୋଧନ | ଲତେ | ଲତେ | ଲତାଃ |

ବିଦ୍ୟା, ମୁଦ୍ରା, ଦେବତା, ମେଧା, ଚନ୍ଦ୍ରା, ଲଜ୍ଜା, ଯାତ୍ରା, ଅମ୍ବା, କଥା, ଶ୍ରଦ୍ଧା, ଜିଗୀଷା, ବୁଭୁକ୍ଷା, ଦୁଷ୍ଟା, କୃହିମା, ସୁଯୋଗ୍ୟା, ପଣ୍ଡିମା ଓ ପବିତ୍ରା ପ୍ରଭୃତି ଶବ୍ଦର ରୂପ ଲତା ଶବ୍ଦର ରୂପ ପରି ।

ଅମ୍ବା (ମା) ଶବ୍ଦର ରୂପ ଲତା ଶବ୍ଦର ରୂପ ପରି ହେଲେ ମଧ୍ୟ ସମ୍ବୋଧନରେ ଅମ୍ବ ଅମ୍ବେ ଅମ୍ବାଃ ହୁଏ ।

**ବର୍ଷା (ବର୍ଷାଋତୁ), ସିକତା (ବାଲୁକା) ଓ ସମା (ବର୍ଷ) ବହୁବଚନାନ୍ତ**

| | ବର୍ଷା | ସିକତା | ସମା |
|---|---|---|---|
| ପ୍ରଥମା | ବର୍ଷାଃ | ସିକତାଃ | ସମାଃ |
| ଦ୍ୱିତୀୟା | ବର୍ଷାଃ | ସିକତାଃ | ସମାଃ |
| ତୃତୀୟା | ବର୍ଷାଭିଃ | ସିକତାଭିଃ | ସମାଭିଃ |
| ଚତୁର୍ଥୀ | ବର୍ଷାଭ୍ୟଃ | ସିକତାଭ୍ୟଃ | ସମାଭ୍ୟଃ |
| ପଞ୍ଚମୀ | ବର୍ଷାଭ୍ୟଃ | ସିକତାଭ୍ୟଃ | ସମାଭ୍ୟଃ |
| ଷଷ୍ଠୀ | ବର୍ଷାଣାମ୍ | ସିକତାନାମ୍ | ସମାନାମ୍ |

| | | | |
|---|---|---|---|
| ସପ୍ତମୀ | ବର୍ଷାସୁ | ସିକତାସୁ | ସମାସୁ |
| ସମ୍ବୋଧନ | ବର୍ଷାଃ | ସିକତାଃ | ସମାଃ |

## 'ଇ' କାରାନ୍ତ

### ମତି (ବୁଦ୍ଧି)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ମତିଃ | ମତୀ | ମତୟଃ |
| ଦ୍ୱିତୀୟା | ମତିମ୍ | ମତୀ | ମତୀଃ |
| ତୃତୀୟା | ମତ୍ୟା | ମତିଭ୍ୟାମ୍ | ମତିଭିଃ |
| ଚତୁର୍ଥୀ | ମତ୍ୟୈ, ମତୟେ | ମତିଭ୍ୟାମ୍ | ମତିଭ୍ୟଃ |
| ପଞ୍ଚମୀ | ମତ୍ୟାଃ, ମତେଃ | ମତିଭ୍ୟାମ୍ | ମତିଭ୍ୟଃ |
| ଷଷ୍ଠୀ | ମତ୍ୟାଃ, ମତେଃ | ମତ୍ୟୋଃ | ମତୀନାମ୍ |
| ସପ୍ତମୀ | ମତ୍ୟାମ୍, ମତୌ | ମତ୍ୟୋଃ | ମତିଷୁ |
| ସମ୍ବୋଧନ | ମତେ | ମତୀ | ମତୟଃ |

ଗତି, ବୁଦ୍ଧି, ଭୂମି, ସ୍ଥିତି, ଜାତି, ଭୂତି, ହାନି, ରାଜି, କାନ୍ତି, ପ୍ରାପ୍ତି, ଶାନ୍ତି, ପ୍ରୀତି, ନୀତି ଓ ଯୁବତି ପ୍ରଭୃତି ଶବ୍ଦର ରୂପ ମତି ଶବ୍ଦର ରୂପ ପରି ।

## 'ଈ' କାରାନ୍ତ

### ନଦୀ

| | | | |
|---|---|---|---|
| ପ୍ରଥମା | ନଦୀ | ନଦ୍ୟୌ | ନଦ୍ୟଃ |
| ଦ୍ୱିତୀୟା | ନଦୀମ୍ | ନଦ୍ୟୌ | ନଦୀଃ |
| ତୃତୀୟା | ନଦ୍ୟା | ନଦୀଭ୍ୟାମ୍ | ନଦୀଭିଃ |
| ଚତୁର୍ଥୀ | ନଦ୍ୟୈ | ନଦୀଭ୍ୟାମ୍ | ନଦୀଭ୍ୟଃ |
| ପଞ୍ଚମୀ | ନଦ୍ୟାଃ | ନଦୀଭ୍ୟାମ୍ | ନଦୀଭ୍ୟଃ |
| ଷଷ୍ଠୀ | ନଦ୍ୟାଃ | ନଦ୍ୟୋଃ | ନଦୀନାମ୍ |
| ସପ୍ତମୀ | ନଦ୍ୟାମ୍ | ନଦ୍ୟୋଃ | ନଦୀଷୁ |
| ସମ୍ବୋଧନ | ନଦି | ନଦ୍ୟୌ | ନଦ୍ୟଃ |

ଦେବୀ, ଜନନୀ, ସଖୀ, * ଗୌରୀ, ନାରୀ, ପତ୍ନୀ, ଶ୍ରୀମତୀ, ଗୁଣବତୀ, ପ୍ରେୟସୀ, କୃତବତୀ, ଗଚ୍ଛନ୍ତୀ, ପଠନ୍ତୀ, ଇଚ୍ଛତୀ, କୁର୍ବତୀ, ଦଦତୀ, ଲଘ୍ବୀ, ବାଣୀ, ରାଜ୍ଞୀ, ଗୁର୍ବୀ ଓ ଯୁବତୀ ପ୍ରଭୃତି ଶବ୍ଦର ରୂପ ନଦୀ ଶବ୍ଦର ରୂପ ପରି ।

ଲକ୍ଷ୍ମୀ, ତନ୍ତ୍ରୀ (ବୀଣା) ଓ ତରୀ ଶବ୍ଦର ରୂପ ନଦୀ ଶବ୍ଦର ରୂପ ପରି ହେଲେ ମଧ୍ୟ ପ୍ରଥମା ଏକବଚନରେ 'ଃ' ହୁଏ, ଯଥା—ଲକ୍ଷ୍ମୀଃ, ତନ୍ତ୍ରୀଃ, ତରୀଃ ।

### ସ୍ତ୍ରୀ ( ସ୍ତ୍ରୀଲୋକ, ଭାର୍ଯ୍ୟା )

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ସ୍ତ୍ରୀ | ସ୍ତ୍ରିୟୌ | ସ୍ତ୍ରିୟଃ |
| ଦ୍ୱିତୀୟା | ସ୍ତ୍ରିୟମ୍, ସ୍ତ୍ରୀମ୍ | ସ୍ତ୍ରିୟୌ | ସ୍ତ୍ରିୟଃ, ସ୍ତ୍ରୀଃ |
| ତୃତୀୟା | ସ୍ତ୍ରିୟା | ସ୍ତ୍ରୀଭ୍ୟାମ୍ | ସ୍ତ୍ରୀଭିଃ |
| ଚତୁର୍ଥୀ | ସ୍ତ୍ରିୟୈ | ସ୍ତ୍ରୀଭ୍ୟାମ୍ | ସ୍ତ୍ରୀଭ୍ୟଃ |
| ପଞ୍ଚମୀ | ସ୍ତ୍ରିୟାଃ | ସ୍ତ୍ରୀଭ୍ୟାମ୍ | ସ୍ତ୍ରୀଭ୍ୟଃ |
| ଷଷ୍ଠୀ | ସ୍ତ୍ରିୟାଃ | ସ୍ତ୍ରିୟୋଃ | ସ୍ତ୍ରୀଣାମ୍ |
| ସପ୍ତମୀ | ସ୍ତ୍ରିୟାମ୍ | ସ୍ତ୍ରିୟୋଃ | ସ୍ତ୍ରୀଷୁ |
| ସମ୍ବୋଧନ | ସ୍ତ୍ରି | ସ୍ତ୍ରିୟୌ | ସ୍ତ୍ରିୟଃ |

## 'ଉ' କାରାନ୍ତ

### ଧେନୁ (ଗାଈ)

| | | | |
|---|---|---|---|
| ପ୍ରଥମା | ଧେନୁଃ | ଧେନୂ | ଧେନବଃ |
| ଦ୍ୱିତୀୟା | ଧେନୁମ୍ | ଧେନୂ | ଧେନୂଃ |
| ତୃତୀୟା | ଧେନ୍ୱା | ଧେନୁଭ୍ୟାମ୍ | ଧେନୁଭିଃ |
| ଚତୁର୍ଥୀ | ଧେନ୍ୱୈ, ଧେନବେ | ଧେନୁଭ୍ୟାମ୍ | ଧେନୁଭ୍ୟଃ |
| ପଞ୍ଚମୀ | ଧେନ୍ୱାଃ, ଧେନୋଃ | ଧେନୁଭ୍ୟାମ୍ | ଧେନୁଭ୍ୟଃ |
| ଷଷ୍ଠୀ | ଧେନ୍ୱାଃ, ଧେନୋଃ | ଧେନ୍ୱୋଃ | ଧେନୂନାମ୍ |

* ନଦୀ ଶବ୍ଦର ରୂପରେ ଯେଉଁ ଯେଉଁ ସ୍ଥାନରେ 'ଦ୍ୟ' ହୋଇଅଛି, ସେହି ସେହି ସ୍ଥାନରେ ଗୌରୀ ଓ ନାରୀ ପ୍ରଭୃତି ଶବ୍ଦର ରୂପରେ 'ର୍ୟ' ନ ହୋଇ 'ର୍ଯ୍ୟ' ହେବ ।

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ସପ୍ତମୀ | ଧେନ୍ୱାମ୍,ଧେନୌ | ଧେନ୍ୱୋଃ | ଧେନୁଷୁ |
| ସମ୍ବୋଧନ | ଧେନୋ | ଧେନୂ | ଧେନବଃ |

ରଜ୍ଜୁ (ଦଉଡ଼ି), ଚଞ୍ଚୁ (ଥଣ୍ଟ), ରେଣୁ (ଧୂଳି), ଲଘୁ, ଗୁରୁ, ସାଧୁ ଓ ତନୁ ପ୍ରଭୃତି ଶବ୍ଦର ରୂପ ଧେନୁ ଶବ୍ଦର ରୂପ ପରି ।

## 'ଊ' କାରାନ୍ତ

### ବଧୂ (ବୋହୂ)

| | | | |
|---|---|---|---|
| ପ୍ରଥମା | ବଧୂଃ | ବଧ୍ୱୌ | ବଧ୍ୱଃ |
| ଦ୍ୱିତୀୟା | ବଧୂମ୍ | ବଧ୍ୱୌ | ବଧୂଃ |
| ତୃତୀୟା | ବଧ୍ୱା | ବଧୂଭ୍ୟାମ୍ | ବଧୂଭିଃ |
| ଚତୁର୍ଥୀ | ବଧ୍ୱୈ | ବଧୂଭ୍ୟାମ୍ | ବଧୂଭ୍ୟଃ |
| ପଞ୍ଚମୀ | ବଧ୍ୱାଃ | ବଧୂଭ୍ୟାମ୍ | ବଧୂଭ୍ୟଃ |
| ଷଷ୍ଠୀ | ବଧ୍ୱାଃ | ବଧ୍ୱୋଃ | ବଧୂନାମ୍ |
| ସପ୍ତମୀ | ବଧ୍ୱାମ୍ | ବଧ୍ୱୋଃ | ବଧୂଷୁ |
| ସମ୍ବୋଧନ | ବଧୁ | ବଧ୍ୱୌ | ବଧ୍ୱଃ |

ତନୂ, ଚଞ୍ଚୂ ଓ ଶ୍ୱଶ୍ରୂ ( ଶାଶୁ ) ଶବ୍ଦର ରୂପ ବଧୂ ଶବ୍ଦର ରୂପ ପରି ।

### ଭୂ (ପୃଥିବୀ)

| | | | |
|---|---|---|---|
| ପ୍ରଥମା | ଭୂଃ | ଭୁବୌ | ଭୁବଃ |
| ଦ୍ୱିତୀୟା | ଭୁବମ୍ | ଭୁବୌ | ଭୁବଃ |
| ତୃତୀୟା | ଭୁବା | ଭୂଭ୍ୟାମ୍ | ଭୂଭିଃ |
| ଚତୁର୍ଥୀ | ଭୁବୈ, ଭୁବେ | ଭୂଭ୍ୟାମ୍ | ଭୂଭ୍ୟଃ |
| ପଞ୍ଚମୀ | ଭୁବାଃ, ଭୁବଃ | ଭୂଭ୍ୟାମ୍ | ଭୂଭ୍ୟଃ |
| ଷଷ୍ଠୀ | ଭୁବାଃ, ଭୁବଃ | ଭୁବୋଃ | ଭୁବାମ୍,ଭୂନାମ୍ |
| ସପ୍ତମୀ | ଭୁବାମ୍, ଭୁବି | ଭୁବୋଃ | ଭୂଷୁ |
| ସମ୍ବୋଧନ | ଭୂଃ | ଭୁବୌ | ଭୁବଃ |

## 'ଋ' କାରାନ୍ତ

ମାତୃ, ଦୁହିତୃ (ଝିଅ), ଯାତୃ (ଯା) ଓ ନନାନ୍ଦୃ (ନଣନ୍ଦ) ପ୍ରଭୃତି ଶବ୍ଦର ରୂପ ପିତୃ ଶବ୍ଦର ରୂପ ପରି ହେଲେ ମଧ୍ୟ ଦ୍ୱିତୀୟା ବିଭକ୍ତିବହୁବଚନରେ 'ନ୍' ସ୍ଥାନରେ 'ଃ' ହୁଏ । ଯଥା – ମାତୄଃ ଓ ଦୁହିତୄଃ ଇତ୍ୟାଦି ।

ସ୍ୱସୃ (ଭଉଣୀ) ଶବ୍ଦର ରୂପ ଦାତୃ ଶବ୍ଦର ରୂପ ପରି; ମାତ୍ର ଦ୍ୱିତୀୟା ବିଭକ୍ତିବହୁବଚନରେ 'ନ୍' ସ୍ଥାନରେ 'ଃ' ହୁଏ । ଯଥା – ସ୍ୱସୄଃ ।

## 'ଔ' କାରାନ୍ତ

### ଗୋ (ଗୋରୁ, ଗାଈ)

(ଗୋ ଶବ୍ଦର ରୂପ ପୁଂଲିଙ୍ଗ ଓ ସ୍ତ୍ରୀ ଲିଙ୍ଗରେ ସମାନ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଗୌଃ | ଗାବୌ | ଗାବଃ |
| ଦ୍ୱିତୀୟା | ଗାମ୍ | ଗାବୌ | ଗାଃ |
| ତୃତୀୟା | ଗବା | ଗୋଭ୍ୟାମ୍ | ଗୋଭିଃ |
| ଚତୁର୍ଥୀ | ଗବେ | ଗୋଭ୍ୟାମ୍ | ଗୋଭ୍ୟଃ |
| ପଞ୍ଚମୀ | ଗୋଃ | ଗୋଭ୍ୟାମ୍ | ଗୋଭ୍ୟଃ |
| ଷଷ୍ଠୀ | ଗୋଃ | ଶବୋଃ | ଗବାମ୍ |
| ସପ୍ତମୀ | ଗବି | ଗବୋଃ | ଗୋଷୁ |
| ସମ୍ବୋଧନ | ଗୌଃ | ଗାବୌ | ଗାବଃ |

## ହସନ୍ତ ଶବ୍ଦ—'ଚ୍' କାରାନ୍ତ

### ବାଚ୍ (ବାକ୍ୟ)

| | | | |
|---|---|---|---|
| ପ୍ରଥମା | ବାକ୍ | ବାଚୌ | ବାଚଃ |
| ଦ୍ୱିତୀୟା | ବାଚମ୍ | ବାଚୌ | ବାଚଃ |
| ତୃତୀୟା | ବାଚା | ବାଗ୍‌ଭ୍ୟାମ୍ | ବାଗ୍‌ଭିଃ |
| ଚତୁର୍ଥୀ | ବାଚେ | ବାଗ୍‌ଭ୍ୟାମ୍ | ବାଗ୍‌ଭ୍ୟଃ |
| ପଞ୍ଚମୀ | ଦାଚଃ | ବାଗ୍‌ଭ୍ୟାମ୍ | ବାଗ୍‌ଭ୍ୟଃ |
| ଷଷ୍ଠୀ | ବାଚଃ | ବାଚୋଃ | ବାଚାମ୍ |

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ସପ୍ତମୀ | ବାଚି | ବାଚୋଃ | ବାକ୍ଷୁ |
| ସମ୍ବୋଧନ | ବାକ୍ | ବାଚୌ | ବାଚଃ |

ତ୍ୱଚ୍ (ଚର୍ମ) ଓ ରୁଚ୍(ଦୀପ୍ତି) ପ୍ରଭୃତି ଶବ୍ଦର ରୂପ ବାଚ୍ ଶବ୍ଦର ରୂପ ପରି।

## 'ତ୍' କାରାନ୍ତ

ସରିତ୍ (ନଦୀ), ଯୋଷିତ୍ (ସ୍ତ୍ରୀ) ଓ ବିଦ୍ୟୁତ୍ ପ୍ରଭୃତି ଶବ୍ଦର ରୂପ ଭୂଭୃତ୍ ଶବ୍ଦର ରୂପ ପରି । ଯଥା—ସରିତ୍ ସରିତୌ ସରିତଃ ଇତ୍ୟାଦି ।

## 'ଦ୍' କାରାନ୍ତ

ବିପଦ୍, ଆପଦ୍, ସମ୍ପଦ୍ ଓ ପରିଷଦ୍ (ସଭା) ପ୍ରଭୃତି ଶବ୍ଦର ରୂପ ସୁହୃଦ୍ ଶବ୍ଦର ରୂପ ପରି । ଯଥା—ବିପଦ୍, ବିପଦୌ, ବିପଦଃ ଇତ୍ୟାଦି ।

'ପ୍' କାରାନ୍ତ 'ଅପ୍' ଓ 'ସ୍' କାରାନ୍ତ 'ସୁମନସ୍' ଶବ୍ଦ ବହୁବଚନାନ୍ତ ।

| | ଅପ୍ (ଜଳ) | ସୁମନସ୍ (ଫୁଲ) |
|---|---|---|
| ପ୍ରଥମା | ଆପଃ | ସୁମନସଃ |
| ଦ୍ୱିତୀୟା | ଅପଃ | ସୁମନସଃ |
| ତୃତୀୟା | ଅଦ୍ଭିଃ | ସୁମନୋଭିଃ |
| ଚତୁର୍ଥୀ | ଅଦ୍ଭ୍ୟଃ | ସୁମନୋଭ୍ୟଃ |
| ପଞ୍ଚମୀ | ଅଦ୍ଭ୍ୟଃ | ସୁମନୋଭ୍ୟଃ |
| ଷଷ୍ଠୀ | ଅପାମ୍ | ସୁମନସାମ୍ |
| ସପ୍ତମୀ | ଅପ୍ସୁ | ସୁମନଃସୁ |
| ସମ୍ବୋଧନ | ଆପଃ | ସୁମନସଃ |

*ଅପ୍ସରସ୍ (ସ୍ୱର୍ଗର ନର୍ତ୍ତକୀ) ଶବ୍ଦର ରୂପ ବେଧସ୍ ଶବ୍ଦର ରୂପ ପରି ।

---

*'ସ୍ତ୍ରିୟାଂ ବହୁଷ୍ୱପ୍ସରସଃ' ଇତି ଅମରକୋଷେ; ମାତ୍ର 'ସ୍ତ୍ରିୟାଂ ବହୁଷ୍ୱପ୍ସରସଃ ସ୍ୟାଦେକତ୍ୱେ ଅପ୍ସରାଃ ଅପି' ଇତି ଶବ୍ଦାର୍ଣ୍ଣବେ ଏବଂ 'ମାତା ମେ ମେନକା ନାମ ବ୍ରହ୍ମଯୋନିର୍ବରାପ୍ସରାଃ' ଇତି ମହାଭାରତେ, ଏଣୁ ଅପ୍ସରସ୍ ଶବ୍ଦବିଷୟରେ ବିଭିନ୍ନ ମତ ଓ ପ୍ରୟୋଗ ଥିବାରୁ ଉକ୍ତ ଶବ୍ଦ କେବଳ ବହୁବଚନାନ୍ତ ନୁହେଁ ।

## 'ଶ୍' କାରାନ୍ତ

### ଦିଶ୍ (ଦିଗ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଦିକ୍ | ଦିଶୌ | ଦିଶଃ |
| ଦ୍ୱିତୀୟା | ଦିଶମ୍ | ଦିଶୌ | ଦିଶଃ |
| ତୃତୀୟା | ଦିଶା | ଦିଗ୍ଭ୍ୟାମ୍ | ଦିଗ୍ଭିଃ |
| ଚତୁର୍ଥୀ | ଦିଶେ | ଦିଗ୍ଭ୍ୟାମ୍ | ଦିଗ୍ଭ୍ୟଃ |
| ପଞ୍ଚମୀ | ଦିଶଃ | ଦିଗ୍ଭ୍ୟାମ୍ | ଦିଗ୍ଭ୍ୟଃ |
| ଷଷ୍ଠୀ | ଦିଶଃ | ଦିଶୋଃ | ଦିଶାମ୍ |
| ସପ୍ତମୀ | ଦିଶି | ଦିଶୋଃ | ଦିକ୍ଷୁ |
| ସମ୍ବୋଧନ | ଦିକ୍ | ଦିଶୌ | ଦିଶଃ |

### ଆଶିସ୍ (ଆଶୀର୍ବାଦ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଆଶୀଃ | ଆଶିଷୌ | ଆଶିଷଃ |
| ଦ୍ୱିତୀୟା | ଆଶିଷମ୍ | ଆଶିଷୌ | ଆଶିଷଃ |
| ତୃତୀୟା | ଆଶିଷା | ଆଶୀର୍ଭ୍ୟାମ୍ | ଆଶୀର୍ଭିଃ |
| ଚତୁର୍ଥୀ | ଆଶିଷେ | ଆଶୀର୍ଭ୍ୟାମ୍ | ଆଶୀର୍ଭ୍ୟଃ |
| ପଞ୍ଚମୀ | ଆଶିଷଃ | ଆଶୀର୍ଭ୍ୟାମ୍ | ଆଶୀର୍ଭ୍ୟଃ |
| ଷଷ୍ଠୀ | ଆଶିଷଃ | ଆଶିଷୋଃ | ଆଶିଷାମ୍ |
| ସପ୍ତମୀ | ଆଶିଷି | ଆଶିଷୋଃ | ଆଶୀଃଷୁ |
| ସମ୍ବୋଧନ | ଆଶୀଃ | ଆଶିଷୌ | ଆଶିଷଃ |

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର :—ବର୍ଷାଋତୁରେ ନଈରେ ବନ୍ୟା ଆସେ । ଏବର୍ଷ ଅତିବୃଷ୍ଟି ପାଇଁ ଶସ୍ୟହାନି ଘଟିବ । ରାତିର ଶୋଭା ଅତିରମଣୀୟ ହୋଇଅଛି । ସ୍ତ୍ରୀଲୋକମାନେ ସନ୍ଧ୍ୟାବେଳେ ନଈରୁ ପାଣି ଆଣିଥିଲେ । ଗଉଡ଼ ଗାଈ ଦୁଇଟିକୁ ଦଉଡ଼ିରେ ବାନ୍ଧୁଅଛି ।

ସୀ ଅମାନେ ମା'ମାନଙ୍କୁ ଦେଖି ଖୁସି ହୁଅନ୍ତି । ବିପଦରେ ଭଗବାନ୍ ସହାୟକ ହେବେ । ରାମ ମା'ମାନଙ୍କୁ ପ୍ରଣାମ କରି ବନକୁ ଗଲେ । ଭଉଣୀମାନେ ଏକାଠି ସିନେମା (ଚଳଚିତ୍ର) ଦେଖୁଅଛନ୍ତି ।

୨ । ସଂଶୋଧନ କର:—ଅପଂ ପିବ । ଅପ୍ସରାଣାଂ ଶୌନ୍ଦର୍ଯ୍ୟ ତୁଳନା ନାସ୍ତି । ଆପଦାତ୍ ରକ୍ଷ ହରି । ବାଲାନାଂ ବାକ୍ ମଧୁରମ୍ । ସରିତାନାଂ ଅପାଃ ନିର୍ମଳାଃ ।

---

## କ୍ଲୀବଲିଙ୍ଗ (ବିଶେଷ୍ୟ ଓ ବିଶେଷଣ)

## ସ୍ୱରାନ୍ତ ଶବ୍ଦ—'ଅ' କାରାନ୍ତ

### ଫଳ

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଫଳମ୍ | ଫଳେ | ଫଳାନି |
| ଦ୍ୱିତୀୟା | ଫଳମ୍ | ଫଳେ | ଫଳାନି |
| ସମ୍ବୋଧନ | ଫଳ | ଫଳେ | ଫଳାନି |

ଅନ୍ୟ ବିଭକ୍ତିମାନଙ୍କରେ ନର ଶବ୍ଦର ରୂପ ପରି ।

ମିତ୍ର (ବନ୍ଧୁ), କଳତ୍ର (ସ୍ତ୍ରୀ), ଅପତ୍ୟ (ପୁଅଝିଅ), ପତ୍ର, ପୁଷ୍ପ, ଗମନ, ରୋଦନ, ପାଣ୍ଡିତ୍ୟ, ମହତ୍ତ୍ୱ, ଗୀତ, ସ୍ମିତ ଓ କର୍ତ୍ତବ୍ୟ ପ୍ରଭୃତି ଶବ୍ଦର ରୂପ ଫଳ ଶବ୍ଦର ରୂପ ପରି ।

## 'ଇ' କାରାନ୍ତ

### ବାରି (ଜଳ)

| | | | |
|---|---|---|---|
| ପ୍ରଥମା | ବାରି | ବାରିଣୀ | ବାରୀଣି |
| ଦ୍ୱିତୀୟା | ବାରି | ବାରିଣୀ | ବାରୀଣି |
| ତୃତୀୟା | ବାରିଣା | ବାରିଭ୍ୟାମ୍ | ବାରିଭିଃ |
| ଚତୁର୍ଥୀ | ବାରିଣେ | ବାରିଭ୍ୟାମ୍ | ବାରିଭ୍ୟଃ |

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପଞ୍ଚମୀ | ବାରିଣଃ | ବାରିଭ୍ୟାମ୍ | ବାରିଭ୍ୟଃ |
| ଷଷ୍ଠୀ | ବାରିଣଃ | ବାରିଣୋଃ | ବାରୀଣାମ୍ |
| ସପ୍ତମୀ | ବାରିଣି | ବାରିଣୋଃ | ବାରିଷୁ |
| ସମ୍ବୋଧନ | ବାରେ, ବାରି | ବାରିଣୀ | ବାରୀଣି |

ନିମ୍ନଲିଖିତ 'ଇ' କାରାନ୍ତ କ୍ଲୀବଲିଙ୍ଗ ଶବ୍ଦମାନଙ୍କ ବ୍ୟତୀତ ଅନ୍ୟ 'ଇ' କାରାନ୍ତ କ୍ଲୀବଲିଙ୍ଗ ଶବ୍ଦମାନଙ୍କର ରୂପ ବାରି ଶବ୍ଦର ରୂପ ପରି ।

ଅକ୍ଷି (ଆଖି)

| | | | |
|---|---|---|---|
| ପ୍ରଥମା | ଅକ୍ଷି | ଅକ୍ଷିଣୀ | ଅକ୍ଷୀଣି |
| ଦ୍ୱିତୀୟା | ଅକ୍ଷି | ଅକ୍ଷିଣୀ | ଅକ୍ଷୀଣି |
| ତୃତୀୟା | ଅକ୍ଷ୍ଣା | ଅକ୍ଷିଭ୍ୟାମ୍ | ଅକ୍ଷିଭିଃ |
| ଚତୁର୍ଥୀ | ଅକ୍ଷ୍ଣେ | ଅକ୍ଷିଭ୍ୟାମ୍ | ଅକ୍ଷିଭ୍ୟଃ |
| ପଞ୍ଚମୀ | ଅକ୍ଷ୍ଣଃ | ଅକ୍ଷିଭ୍ୟାମ୍ | ଅକ୍ଷିଭ୍ୟଃ |
| ଷଷ୍ଠୀ | ଅକ୍ଷ୍ଣଃ | ଅକ୍ଷ୍ଣୋଃ | ଅକ୍ଷ୍ଣାମ୍ |
| ସପ୍ତମୀ | ଅକ୍ଷ୍ଣି, ଅକ୍ଷଣି | ଅକ୍ଷ୍ଣୋଃ | ଅକ୍ଷିଷୁ |
| ସମ୍ବୋଧନ | ଅକ୍ଷେ, ଅକ୍ଷି | ଅକ୍ଷିଣୀ | ଅକ୍ଷୀଣି |

ଦଧି, ଅସ୍ଥି ଓ ସକ୍ଥି ଶବ୍ଦର ରୂପ ଅକ୍ଷି ଶବ୍ଦର ରୂପ ପରି ।

## 'ଉ' କାରାନ୍ତ

ମଧୁ (ମହୁ, ମଦ୍ୟ)

| | | | |
|---|---|---|---|
| ପ୍ରଥମା | ମଧୁ | ମଧୁନୀ | ମଧୂନି |
| ଦ୍ୱିତୀୟା | ମଧୁ | ମଧୁନୀ | ମଧୂନି |
| ତୃତୀୟା | ମଧୁନା | ମଧୁଭ୍ୟାମ୍ | ମଧୁଭିଃ |
| ଚତୁର୍ଥୀ | ମଧୁନେ | ମଧୁଭ୍ୟାମ୍ | ମଧୁଭ୍ୟଃ |
| ପଞ୍ଚମୀ | ମଧୁନଃ | ମଧୁଭ୍ୟାମ୍ | ମଧୁଭ୍ୟଃ |
| ଷଷ୍ଠୀ | ମଧୁନଃ | ମଧୁନୋଃ | ମଧୂନାମ୍ |
| ସପ୍ତମୀ | ମଧୁନି | ମଧୁନୋଃ | ମଧୁଷୁ |
| ସମ୍ବୋଧନ | ମଧୋ, ମଧୁ | ମଧୁନୀ | ମଧୂନି |

ବସ୍ତୁ (ପଦାର୍ଥ), ଅଶ୍ରୁ (ଲୁହ), ଅମ୍ବୁ (ଜଳ), ଶ୍ମଶ୍ରୁ (ଦାଢ଼ି), ଜାନୁ (ଆଣ୍ଠୁ), ତନୁ (କ୍ଷୀଣ), ଗୁରୁ, ଗୃରୁ ଓ ଲଘୁ ପ୍ରଭୃତ ଶବ୍ଦର ରୂପ ମଧୁ ଶବ୍ଦର ରୂପପରି ।

## ହସନ୍ତ ଶବ୍ଦ—'ତ୍' କାରାନ୍ତ

### ଗଚ୍ଛତ୍

୧ମା, ୨ୟା ଓ ସମ୍ବୋଧନ-ଗଚ୍ଛତ୍ ଗଚ୍ଛନ୍ତୀ ଗଚ୍ଛନ୍ତ । ତୃତୀୟାଠାରୁ ପୁଂଲିଙ୍ଗପରି ।

### ଶ୍ରୀମତ୍

୧ମା; ୨ୟା ଓ ସମ୍ବୋଧନ-ଶ୍ରୀମତ୍ ଶ୍ରୀମତୀ ଶ୍ରୀମନ୍ତ । ତୃତୀୟାଠାରୁ ପୁଂଲିଙ୍ଗପରି

### ଦଦତ୍

୧ମା, ୨ୟା ଓ ସମ୍ବୋଧନ-ଦଦତ୍ ଦଦତୀ ଦଦନ୍ତ, ଦଦତ । ତୃତୀୟାଠାରୁ ପୁଂଲିଙ୍ଗ ପରି ।

### ମହତ୍

୧ମା, ୨ୟା ଓ ସମ୍ବୋଧନ-ମହତ୍ ମହତୀ ମହାନ୍ତ । ତୃତୀୟାଠାରୁ ପୁଂଲିଙ୍ଗପରି ।

## 'ନ୍' କାରାନ୍ତ

### ନାମନ୍ (ନାମ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ୧ମା ଓ ୨ୟା | ନାମ | ନାମ୍ନୀ, ନାମନୀ | ନାମାନି |
| ସମ୍ବୋଧନ | ନାମ, ନାମନ୍ | ନାମ୍ନୀ, ନାମନୀ | ନାମାନି |

ଅନ୍ୟ ବିଭକ୍ତିମାନଙ୍କରେ ମହିମନ୍ ଶବ୍ଦର ରୂପ ପରି ।

ଧାମନ୍, ପ୍ରେମନ୍, ଲୋମନ୍ ଓ ବ୍ୟୋମନ୍ (ଆକାଶ) ପ୍ରଭୃତ ଶବ୍ଦର ରୂପ ନାମନ୍ ଶବ୍ଦର ରୂପ ପରି ।

### କର୍ମନ୍ (କାର୍ଯ୍ୟ)

| | | | |
|---|---|---|---|
| ୧ମା ଓ ୨ୟା | କର୍ମ | କର୍ମଣୀ | କର୍ମାଣି |
| ସମ୍ବୋଧନ | କର୍ମ, କର୍ମନ୍ | କର୍ମଣୀ | କର୍ମାଣି |

ଅନ୍ୟବିଭକ୍ତିମାନଙ୍କରେ ଆତ୍ମନ୍ ଶବ୍ଦର ରୂପ ପରି ।

ଚର୍ମନ୍, ବେଶ୍ମନ୍ (ଗୃହ), ଜନ୍ମନ୍ ଓ ଭସ୍ମନ୍ ଶବ୍ଦର ରୂପ କର୍ମନ୍ ଶବ୍ଦର ରୂପ ପରି ।

## ଅହନ୍ (ଦିନ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଅହଃ | ଅହ୍ନୀ, ଅହନୀ | ଅହାନି |
| ଦ୍ୱିତୀୟା | ଅହଃ | ଅହ୍ନୀ, ଅହନୀ | ଅହାନି |
| ତୃତୀୟା | ଅହ୍ନା | ଅହୋଭ୍ୟାମ୍ | ଅହୋଭିଃ |
| ଚତୁର୍ଥୀ | ଅହ୍ନେ | ଅହୋଭ୍ୟାମ୍ | ଅହୋଭ୍ୟଃ |
| ପଞ୍ଚମୀ | ଅହ୍ନଃ | ଅହୋଭ୍ୟାମ୍ | ଅହୋଭ୍ୟଃ |
| ଷଷ୍ଠୀ | ଅହ୍ନଃ | ଅହ୍ନୋଃ | ଅହ୍ନାମ୍ |
| ସପ୍ତମୀ | ଅହ୍ନି, ଅହନି | ଅହ୍ନୋଃ | ଅହଃସୁ |
| ସମ୍ବୋଧନ | ଅହଃ | ଅହ୍ନୀ, ଅହନୀ | ଅହାନି |

## 'ସ୍' କାରାନ୍ତ

### ପୟସ୍ (ଜଳ)

୧ମା, ୨ୟା ଓ ସମ୍ବୋଧନ ପୟଃ ପୟସୀ ପୟାଂସି

ଅନ୍ୟ ବିଭକ୍ତିମାନଙ୍କରେ ବେ ସ୍ ଶବ୍ଦର ରୂପ ପରି ।

ମନସ୍, ଚେତସ୍, ନଭସ୍ (ଆକାଶ), ସରସ୍, ଯଶସ୍, ସ୍ରୋତସ୍, ବାସସ୍, ଶିରସ୍, ଅମ୍ଭସ୍ ଓ ଅର୍ଣ୍ଣସ୍ (ଜଳ) ପ୍ରଭୃତି ଶବ୍ଦର ରୂପ ପୟସ୍ ଶବ୍ଦର ରୂପ ପରି ।

### ହବିସ୍ (ଘୃତ)

| | | | |
|---|---|---|---|
| ପ୍ରଥମା | ହବିଃ | ହବିଷୀ | ହବୀଂଷି |
| ଦ୍ୱିତୀୟା | ହବିଃ | ହବିଷୀ | ହବୀଂଷି |
| ତୃତୀୟା | ହବିଷା | ହବିର୍ଭ୍ୟାମ୍ | ହବିର୍ଭିଃ |
| ଚତୁର୍ଥୀ | ହବିଷେ | ହବିର୍ଭ୍ୟାମ୍ | ହବିର୍ଭ୍ୟଃ |
| ପଞ୍ଚମୀ | ହବିଷଃ | ହବିର୍ଭ୍ୟାମ୍ | ହବିର୍ଭ୍ୟଃ |
| ଷଷ୍ଠୀ | ହବିଷଃ | ହବିଷୋଃ | ହବିଷାମ୍ |
| ସପ୍ତମୀ | ହବିଷି | ହବିଷୋଃ | ହବିଃଷୁ |
| ସମ୍ବୋଧନ | ହବିଃ | ହବିଷୀ | ହବୀଂଷି |

ଜ୍ୟୋତିସ୍ (ତେଜ) ଓ ସର୍ପିସ୍ (ଘୃତ) ଶବ୍ଦର ରୂପ ଏହିପରି ।

## ଧନୁସ୍ (ଧନୁ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଧନୁଃ | ଧନୁଷୀ | ଧନୂଂଷି |
| ଦ୍ୱିତୀୟା | ଧନୁଃ | ଧନୁଷୀ | ଧନୂଂଷି |
| ତୃତୀୟା | ଧନୁଷା | ଧନୁର୍ଭ୍ୟାମ୍ | ଧନୁର୍ଭିଃ |
| ଚତୁର୍ଥୀ | ଧନୁଷେ | ଧନୁର୍ଭ୍ୟାମ୍ | ଧନୁର୍ଭ୍ୟଃ |
| ପଞ୍ଚମୀ | ଧନୁଷଃ | ଧନୁର୍ଭ୍ୟାମ୍ | ଧନୁର୍ଭ୍ୟଃ |
| ଷଷ୍ଠୀ | ଧନୁଷଃ | ଧନୁଷୋଃ | ଧନୁଷାମ୍ |
| ସପ୍ତମୀ | ଧନୁଷି | ଧନୁଷୋଃ | ଧନୁଃଷୁ |
| ସମ୍ବୋଧନ | ଧନୁଃ | ଧନୁଷୀ | ଧନୂଂଷି |

ଚକ୍ଷୁସ୍, ଆୟୁସ୍ ଓ ବପୁସ୍ ପ୍ରଭୃତି ଶବ୍ଦର ରୂପ ଧନୁସ୍ ଶବ୍ଦର ରୂପ ପରି ।

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର—ଏହି ଜିନିଷ ତୁମ ଦୋକାନ ଛଡ଼ା ଅନ୍ୟ-ଠାରେ ମିଳୁନାହିଁ । ପାଣ୍ଡବମାନେ ମାତା କୁନ୍ତୀ ଓ କଳତ୍ର ଦ୍ରୌପଦୀଙ୍କୁ ନେଇ ବଣକୁ ଯାଇଥିଲେ । ଦହିରୁ ଲହୁଣୀ ଆଣ । ଯୁବକଙ୍କର ମଧ୍ୟ ଦାଢ଼ି ପାଚିଗଲାଣି । ରାମର ମନ ପବିତ୍ର । ଧାର୍ମିକର ଯଶ ପୃଥିବୀରେ ବ୍ୟାପ୍ତ ହୁଏ । ଲକ୍ଷ୍ମଣ ଧନୁରେ ଇନ୍ଦ୍ରଜିତକୁ ମାରିଥିଲେ । ନାନା ପ୍ରଦେଶର ଲୋକେ ମହାତ୍ମାଗାନ୍ଧିଙ୍କ ଚିତାଭସ୍ମ ନେଇଥିଲେ । ଗୁଡ଼ିଏ ଫଳ ଗଛରୁ ପାଣିରେ ପଡ଼ିଥିଲା । ଗାଈର ଦୁଧ ମଧୁର ।

୨ । ସଂଶୋଧନ କର—ବାଳକସ୍ୟ ନାମଂ ପୃଚ୍ଛ । ନଭେ ନକ୍ଷତ୍ରାଃ ଶୋଭନ୍ତେ । ଶୈବ୍ୟା ! ଵପ୍ରବେଶ୍ଣଂ ଯାହି । ଅମ୍ବୁଃ ନିର୍ମଳଃ । ରାଜ୍ଞଃ ଅପତ୍ୟାଃ ଅସୁସ୍ଥାଃ ଭବନ୍ତୁ । ରାମସ୍ୟ ମନେ ଦୁଃଖଃ କଥଂ ? ପିତୁର୍ନାମଂ ନ ଗୃହ୍ଣୀୟାତ୍ । ବ୍ୟୋମସ୍ୟ ଅନ୍ତୋ ନାସ୍ତି ।

# ସର୍ବନାମ

## ସର୍ବ (ସମସ୍ତ, ସବୁ) [ପୁଂଲିଙ୍ଗ]

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ସର୍ବଃ | ସର୍ବୌ | ସର୍ବେ |
| ଦ୍ୱିତୀୟା | ସର୍ବମ୍ | ସର୍ବୌ | ସର୍ବାନ୍ |
| ତୃତୀୟା | ସର୍ବେଣ | ସର୍ବାଭ୍ୟାମ୍ | ସର୍ବୈଃ |
| ଚତୁର୍ଥୀ | ସର୍ବସ୍ମୈ | ସର୍ବାଭ୍ୟାମ୍ | ସର୍ବେଭ୍ୟଃ |
| ପଞ୍ଚମୀ | ସର୍ବସ୍ମାତ୍ | ସର୍ବାଭ୍ୟାମ୍ | ସର୍ବେଭ୍ୟଃ |
| ଷଷ୍ଠୀ | ସର୍ବସ୍ୟ | ସର୍ବୟୋଃ | ସର୍ବେଷାମ୍ |
| ସପ୍ତମୀ | ସର୍ବସ୍ମିନ୍ | ସର୍ବୟୋଃ | ସର୍ବେଷୁ |
| ସମ୍ବୋଧନ | ସର୍ବ | ସର୍ବୌ | ସର୍ବେ |

ବିଶ୍ୱ, ସ୍ୱ (ଆତ୍ମୀୟ), ଅନ୍ୟ ଓ ଇତର ଶବ୍ଦର ରୂପ ସର୍ବ ଶବ୍ଦର ରୂପ ପରି ।

ପୂର୍ବ, ଉତ୍ତର, ଦକ୍ଷିଣ, ପର ଓ ଅପର ଶବ୍ଦର ରୂପ ସର୍ବ ଶବ୍ଦର ରୂପ ପରି; ମାତ୍ର ଏମାନଙ୍କର ପ୍ରଥମାବହୁବଚନ, ପଞ୍ଚମୀ ଓ ସପ୍ତମୀ ଏକବଚନ ଏବଂ ସମ୍ବୋଧନବହୁବଚନରେ ପକ୍ଷେ ନର ଶବ୍ଦର ରୂପ ପରି ରୂପ କରାଯାଏ । ଯଥା – ପୂର୍ବେ, ପୂର୍ବା; ପୂର୍ବସ୍ମାତ୍, ପୂର୍ବାତ୍; ପୂର୍ବସ୍ମିନ୍, ପୂର୍ବେ ଇତ୍ୟାଦି ।

## [ସ୍ତ୍ରୀଲିଙ୍ଗ]

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ସର୍ବାଃ | ସର୍ବେ | ସର୍ବାଃ |
| ଦ୍ୱିତୀୟା | ସର୍ବାମ୍ | ସର୍ବେ | ସର୍ବାଃ |
| ତୃତୀୟା | ସର୍ବୟା | ସର୍ବାଭ୍ୟାମ୍ | ସର୍ବାଭିଃ |
| ଚତୁର୍ଥୀ | ସର୍ବସ୍ୟୈ | ସର୍ବାଭ୍ୟାମ୍ | ସର୍ବାଭ୍ୟଃ |
| ପଞ୍ଚମୀ | ସର୍ବାସ୍ୟାଃ | ସର୍ବାଭ୍ୟାମ୍ | ସର୍ବାଭ୍ୟଃ |
| ଷଷ୍ଠୀ | ସର୍ବସ୍ୟାଃ | ସର୍ବୟୋଃ | ସର୍ବାସାମ୍ |
| ସପ୍ତମୀ | ସର୍ବସ୍ୟାମ୍ | ସର୍ବୟୋଃ | ସର୍ବାସୁ |
| ସମ୍ବୋଧନ | ସର୍ବେ | ସର୍ବେ | ସର୍ବାଃ |

[ କ୍ଲୀବଲିଙ୍ଗ ]

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା ଓ ଦ୍ୱିତୀୟା | ସର୍ବମ୍ | ସର୍ବେ | ସର୍ବାଣି |
| ସମ୍ବୋଧନ | ସର୍ବ | ସର୍ବେ | ସର୍ବାଣି |

ଅନ୍ୟବିଭକ୍ତିମାନଙ୍କରେ ପୁଂଲିଙ୍ଗ ପରି ।

ଅନ୍ୟ ଓ ଇତର ଶବ୍ଦର କ୍ଲୀବଲିଙ୍ଗରେ ପ୍ରଥମା, ଦ୍ୱିତୀୟା ଓ ସମ୍ବୋଧନର ଏକବଚନରେ ଯଥାକ୍ରମେ, 'ଅନ୍ୟତ୍' ଓ 'ଇତରତ୍' ହୁଏ । ଅନ୍ୟ ବିଭକ୍ତିମାନଙ୍କରେ ସର୍ବ ଶବ୍ଦ ପରି ।

* ତଦ୍ (ସେ) [ପୁଂଲିଙ୍ଗ]

| | | | |
|---|---|---|---|
| ପ୍ରଥମା | ସଃ | ତୌ | ତେ |
| ଦ୍ୱିତୀୟା | ତମ୍ | ତୌ | ତାନ୍ |
| ତୃତୀୟା | ତେନ | ତାଭ୍ୟାମ୍ | ତୈଃ |
| ଚତୁର୍ଥୀ | ତସ୍ମୈ | ତାଭ୍ୟାମ୍ | ତେଭ୍ୟଃ |
| ପଞ୍ଚମୀ | ତସ୍ମାତ୍ | ତାଭ୍ୟାମ୍ | ତେଭ୍ୟଃ |
| ଷଷ୍ଠୀ | ତସ୍ୟ | ତୟୋଃ | ତେଷାମ୍ |
| ସପ୍ତମୀ | ତସ୍ମିନ୍ | ତୟୋଃ | ତେଷୁ |

[ ସ୍ତ୍ରୀଲିଙ୍ଗ ]

| | | | |
|---|---|---|---|
| ପ୍ରଥମା | ସା | ତେ | ତାଃ |
| ଦ୍ୱିତୀୟା | ତାମ୍ | ତେ | ତାଃ |
| ତୃତୀୟା | ତୟା | ତାଭ୍ୟାମ୍ | ତାଭିଃ |
| ଚତୁର୍ଥୀ | ତସ୍ୟୈ | ତାଭ୍ୟାମ୍ | ତାଭ୍ୟଃ |
| ପଞ୍ଚମୀ | ତସ୍ୟାଃ | ତାଭ୍ୟାମ୍ | ତାଭ୍ୟଃ |
| ଷଷ୍ଠୀ | ତସ୍ୟାଃ | ତୟୋଃ | ତାସାମ୍ |
| ସପ୍ତମୀ | ତସ୍ୟାମ୍ | ତୟୋଃ | ତାସୁ |

---

*ତଦ୍, ଏତଦ୍, କିମ୍, ଯଦ୍, ଇଦମ୍, ଅଦସ୍, ଯୁଷ୍ମଦ୍ ଓ ଅସ୍ମଦ୍ ଶବ୍ଦର ସମ୍ବୋଧନ ନାହିଁ ।

[କ୍ଲୀବଲିଙ୍ଗ]

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା ଓ ଦ୍ୱିତୀୟା | ତତ୍ | ତେ | ତାନି |

ଅନ୍ୟ ବିଭକ୍ତିମାନଙ୍କରେ ପୁଂଲିଙ୍ଗ ପରି ।

ଏତଦ୍ (ଏହି)

ତଦ୍ ଶବ୍ଦପୂର୍ବରେ 'ଏ' ଯୋଗ କଲେ ଓ ପ୍ରଥମା ବିଭକ୍ତିର ଏକବଚନରେ 'ସ' ସ୍ଥାନରେ 'ଷ' ବସାଇଲେ ଏତଦ୍ ଶବ୍ଦର ରୂପ ହେବ ।

| | | | | |
|---|---|---|---|---|
| ପୁଂଲିଙ୍ଗ — | ଏଷଃ | ଏତୌ | ଏତେ | ଇତ୍ୟାଦି । |
| ସ୍ତ୍ରୀଲିଙ୍ଗ — | ଏଷା | ଏତେ | ଏତାଃ | ଇତ୍ୟାଦି । |
| କ୍ଲୀବଲିଙ୍ଗ — | ଏତତ୍ | ଏତେ | ଏତାନି | ଇତ୍ୟାଦି । |

* ଇଦମ୍ (ଏହି) [ପୁଂଲିଙ୍ଗ]

| | | | |
|---|---|---|---|
| ପ୍ରଥମା | ଅୟମ୍ | ଇମୌ | ଇମେ |
| ଦ୍ୱିତୀୟା | ଇମମ୍, ଏନମ୍ | ଇମୌ, ଏନୌ | ଇମାନ୍, ଏନାନ୍ |
| ତୃତୀୟା | ଅନେନ, ଏନେନ | ଆଭ୍ୟାମ୍ | ଏଭିଃ |
| ଚତୁର୍ଥୀ | ଅସ୍ମୈ | ଆଭ୍ୟାମ୍ | ଏଭ୍ୟଃ |
| ପଞ୍ଚମୀ | ଅସ୍ମାତ୍ | ଆଭ୍ୟାମ୍ | ଏଭ୍ୟଃ |
| ଷଷ୍ଠୀ | ଅସ୍ୟ | ଅନୟୋଃ, ଏନୟୋଃ | ଏଷାମ୍ |
| ସପ୍ତମୀ | ଅସ୍ମିନ୍ | ଅନୟୋଃ, ଏନୟୋଃ | ଏଷୁ |

[ସ୍ତ୍ରୀଲିଙ୍ଗ]

| | | | |
|---|---|---|---|
| ପ୍ରଥମା | ଇୟମ୍ | ଇମେ | ଇମାଃ |
| ଦ୍ୱିତୀୟା | ଇମାମ୍, ଏନାମ୍ | ଇମେ, ଏନେ | ଇମାଃ, ଏନାଃ |
| ତୃତୀୟା | ଏନୟା, ଏନୟା | ଆଭ୍ୟାମ୍ | ଆଭିଃ |
| ଚତୁର୍ଥୀ | ଅସ୍ୟୈ | ଆଭ୍ୟାମ୍ | ଆଭ୍ୟଃ |

---

* ପୁନରୁକ୍ତ ବୁଝାଇଲେ ଇଦମ୍ ଓ ଏତଦ୍ ଶବ୍ଦର ଦ୍ୱିତୀୟା ବିଭକ୍ତିରେ, ତୃତୀୟା ବିଭକ୍ତିର ଏକବଚନରେ ଏବଂ ଷଷ୍ଠୀ ଓ ସପ୍ତମୀ ବିଭକ୍ତିର ଦ୍ୱିବଚନରେ ପକ୍ଷେ 'ଏନ' ଆଦେଶ ହୁଏ ।

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପଞ୍ଚମୀ | ଅସ୍ୟାଃ | ଆଭ୍ୟାମ୍ | ଆଭ୍ୟଃ |
| ଷଷ୍ଠୀ | ଅସ୍ୟାଃ | ଅନୟୋଃ, ଏନୟୋଃ | ଆସାମ୍ |
| ସପ୍ତମୀ | ଅସ୍ୟାମ୍ | ଅନୟୋଃ, ଏନୟୋଃ | ଆସୁ |

[କ୍ଲୀବଲିଙ୍ଗ]

| | | | |
|---|---|---|---|
| ପ୍ରଥମା | ଇଦମ୍ | ଇମେ | ଇମାନି |
| ଦ୍ୱିତୀୟା | ଇଦମ୍, ଏନତ୍ | ଇମେ, ଏନେ | ଇମାନି, ଏନାନି |

ଅନ୍ୟ ବିଭକ୍ତିମାନଙ୍କରେ ପୁଂଲିଙ୍ଗ ପରି ।

କିମ୍ (କଏ) [ପୁଂଲିଙ୍ଗ]

| | | | |
|---|---|---|---|
| ପ୍ରଥମା | କଃ | କୌ | କେ |
| ଦ୍ୱିତୀୟା | କମ୍ | କୌ | କାନ୍ |
| ତୃତୀୟା | କେନ | କାଭ୍ୟାମ୍ | କୈଃ |
| ଚତୁର୍ଥୀ | କସ୍ମୈ | କାଭ୍ୟାମ୍ | କେଭ୍ୟଃ |
| ପଞ୍ଚମୀ | କସ୍ମାତ୍ | କାଭ୍ୟାମ୍ | କେଭ୍ୟଃ |
| ଷଷ୍ଠୀ | କସ୍ୟ | କୟୋଃ | କେଷାମ୍ |
| ସପ୍ତମୀ | କସ୍ମିନ୍ | କୟୋଃ | କେଷୁ |

[ସ୍ତ୍ରୀଲିଙ୍ଗ]

| | | | |
|---|---|---|---|
| ପ୍ରଥମା | କା | କେ | କାଃ |
| ଦ୍ୱିତୀୟା | କାମ୍ | କେ | କାଃ |
| ତୃତୀୟା | କୟା | କାଭ୍ୟାମ୍ | କାଭିଃ |
| ଚତୁର୍ଥୀ | କସ୍ୟୈ | କାଭ୍ୟାମ୍ | କାଭ୍ୟଃ |
| ପଞ୍ଚମୀ | କସ୍ୟାଃ | କାଭ୍ୟାମ୍ | କାଭ୍ୟଃ |
| ଷଷ୍ଠୀ | କସ୍ୟାଃ | କୟୋଃ | କାସାମ୍ |
| ସପ୍ତମୀ | କସ୍ୟାମ୍ | କୟୋଃ | କାସୁ |

[କ୍ଳୀବଲିଙ୍ଗ]

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା ଓ ଦ୍ୱିତୀୟା | କମ୍ | କେ | କାନି |

ଅନ୍ୟ ବିଭକ୍ତିମାନଙ୍କରେ ପୁଂଲିଙ୍ଗ ପରି ।

ଯଦ୍ (ଯିଏ) [ପୁଂଲିଙ୍ଗ]

| | | | |
|---|---|---|---|
| ପ୍ରଥମା | ଯଃ | ଯୌ | ଯେ |
| ଦ୍ୱିତୀୟା | ଯମ୍ | ଯୌ | ଯାନ୍ |
| ତୃତୀୟା | ଯେନ | ଯାଭ୍ୟାମ୍ | ଯୈଃ |
| ଚତୁର୍ଥୀ | ଯସ୍ମୈ | ଯାଭ୍ୟାମ୍ | ଯେଭ୍ୟଃ |
| ପଞ୍ଚମୀ | ଯସ୍ମାତ୍ | ଯାଭ୍ୟାମ୍ | ଯେଭ୍ୟଃ |
| ଷଷ୍ଠୀ | ଯସ୍ୟ | ଯୟୋଃ | ଯେଷାମ୍ |
| ସପ୍ତମୀ | ଯସ୍ମିନ୍ | ଯୟୋଃ | ଯେଷୁ |

[ସ୍ତ୍ରୀଲିଙ୍ଗ]

| | | | |
|---|---|---|---|
| ପ୍ରଥମା | ଯା | ଯେ | ଯାଃ |
| ଦ୍ୱିତୀୟା | ଯାମ୍ | ଯେ | ଯାଃ |
| ତୃତୀୟା | ଯୟା | ଯାଭ୍ୟାମ୍ | ଯାଭିଃ |
| ଚତୁର୍ଥୀ | ଯସ୍ୟୈ | ଯାଭ୍ୟାମ୍ | ଯାଭ୍ୟଃ |
| ପଞ୍ଚମୀ | ଯସ୍ୟାଃ | ଯାଭ୍ୟାମ୍ | ଯାଭ୍ୟଃ |
| ଷଷ୍ଠୀ | ଯସ୍ୟାଃ | ଯୟୋଃ | ଯାସାମ୍ |
| ସପ୍ତମୀ | ଯସ୍ୟାମ୍ | ଯୟୋଃ | ଯାସୁ |

[କ୍ଳୀବଲିଙ୍ଗ]

| | | | |
|---|---|---|---|
| ପ୍ରଥମା ଓ ଦ୍ୱିତୀୟା | ଯତ୍ | ଯେ | ଯାନି |

ଅନ୍ୟ ବିଭକ୍ତିମାନଙ୍କରେ ପୁଂଲିଙ୍ଗ ପରି ।

## ଅଦସ୍ (ସେ) [ପୁଂଲିଙ୍ଗ]

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଅସୌ | ଅମୂ | ଅମୀ |
| ଦ୍ୱିତୀୟା | ଅମୁମ୍ | ଅମୂ | ଅମୂନ୍ |
| ତୃତୀୟା | ଅମୁନା | ଅମୂଭ୍ୟାମ୍ | ଅମୀଭିଃ |
| ଚତୁର୍ଥୀ | ଅମୁଷ୍ମୈ | ଅମୂଭ୍ୟାମ୍ | ଅମୀଭ୍ୟଃ |
| ପଞ୍ଚମୀ | ଅମୁଷ୍ମାତ୍ | ଅମୂଭ୍ୟାମ୍ | ଅମୀଭ୍ୟଃ |
| ଷଷ୍ଠୀ | ଅମୁଷ୍ୟ | ଅମୁଯୋଃ | ଅମୀଷାମ୍ |
| ସପ୍ତମୀ | ଅମୁଷ୍ମିନ୍ | ଅମୁଯୋଃ | ଅମୀଷୁ |

### [ ସ୍ତ୍ରୀଲିଙ୍ଗ ]

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ଅସୌ | ଅମୂ | ଅମୂଃ |
| ଦ୍ୱିତୀୟା | ଅମୂମ୍ | ଅମୂ | ଅମୂଃ |
| ତୃତୀୟା | ଅମୁୟା | ଅମୂଭ୍ୟାମ୍ | ଅମୂଭିଃ |
| ଚତୁର୍ଥୀ | ଅମୁଷ୍ୟୈ | ଅମୂଭ୍ୟାମ୍ | ଅମୂଭ୍ୟଃ |
| ପଞ୍ଚମୀ | ଅମୁଷ୍ୟାଃ | ଅମୂଭ୍ୟାମ୍ | ଅମୂଭ୍ୟଃ |
| ଷଷ୍ଠୀ | ଅମୁଷ୍ୟାଃ | ଅମୁଯୋଃ | ଅମୂଷାମ୍ |
| ସପ୍ତମୀ | ଅମୁଷ୍ୟାମ୍ | ଅମୁଯୋଃ | ଅମୂଷୁ |

### [କ୍ଲୀବଲିଙ୍ଗ]

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା ଓ ଦ୍ୱିତୀୟା | ଅଦଃ | ଅମୂ | ଅମୂନି |

ଅନ୍ୟ ବିଭକ୍ତିମାନଙ୍କରେ ପୁଂଲିଙ୍ଗ ପରି ।

## ତିନିଲିଙ୍ଗରେ ସମାନରୂପବିଶିଷ୍ଟ ସର୍ବନାମ

### ଯୁଷ୍ମଦ୍ (ତୁ, ତୁମ୍ଭେ)

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ପ୍ରଥମା | ତ୍ୱମ୍ | ଯୁବାମ୍ | ଯୂୟମ୍ |
| ଦ୍ୱିତୀୟା | ତ୍ୱାମ୍, ତ୍ୱା | ଯୁବାମ୍, ବାମ୍ | ଯୁଷ୍ମାନ୍, ବଃ |

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| ତୃତୀୟା | ତ୍ୱୟା | ଯୁବାଭ୍ୟାମ୍ | ଯୁଷ୍ମାଭିଃ |
| ଚତୁର୍ଥୀ | ତୁଭ୍ୟମ୍, ତେ | ଯୁବାଭ୍ୟାମ୍,ବାମ୍ | ଯୁଷ୍ମଭ୍ୟମ୍, ବଃ |
| ପଞ୍ଚମୀ | ତ୍ୱତ୍ | ଯୁବାଭ୍ୟାମ୍ | ଯୁଷ୍ମତ୍ |
| ଷଷ୍ଠୀ | ତବ, ତେ | ଯୁବୟୋଃ,ବାମ୍ | ଯୁଷ୍ମାକମ୍, ବଃ |
| ସପ୍ତମୀ | ତ୍ୱୟି | ଯୁବୟୋଃ | ଯୁଷ୍ମାସୁ |

ଅସ୍ମଦ୍ (ମୁଁ, ଆମ୍ଭେ)

| | | | |
|---|---|---|---|
| ପ୍ରଥମା | ଅହମ୍ | ଆବାମ୍ | ବୟମ୍ |
| ଦ୍ୱିତୀୟା | ମାମ୍, ମା | ଆବାମ୍, ନୌ | ଅସ୍ମାନ୍, ନଃ |
| ତୃତୀୟା | ମୟା | ଆବାଭ୍ୟାମ୍ | ଅସ୍ମାଭିଃ |
| ଚତୁର୍ଥୀ | ମହ୍ୟମ୍, ମେ | ଆବାଭ୍ୟାମ୍,ନୌ | ଅସ୍ମଭ୍ୟମ୍, ନଃ |
| ପଞ୍ଚମୀ | ମତ୍ | ଆବାଭ୍ୟାମ୍ | ଅସ୍ମତ୍ |
| ଷଷ୍ଠୀ | ମମ, ମେ | ଆବୟୋଃ,ନୌ | ଅସ୍ମାକମ୍, ନଃ |
| ସପ୍ତମୀ | ମୟି | ଆବୟୋଃ | ଅସ୍ମାସୁ |

ତେ, ମେ, ବାମ୍, ନୌ, ବଃ, ନଃ, ତ୍ୱା ଓ ମା — ଏହି ପଦଗୁଡ଼ିକ ବାକ୍ୟର ଆଦ୍ୟରେ; ଚ, ବା, ଏବ ଓ ହା ଏହି ଅବ୍ୟୟଯୋଗରେ ଏବଂ ସମ୍ବୋଧନପଦର ଠିକ୍ ପରେ ବ୍ୟବହୃତ ହୁଏ ନାହିଁ । ଯଥା — 'ତେ ଗୃହଂ କୁତ୍ର ?' ନ ହୋଇ 'ତବ ଗୃହଂ କୁତ୍ର ?' ହେବ ଅଥବା 'ଗୃହଂ ତେ କୁତ୍ର ?' ହେବ ।

## ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର — ସେହି ବାଳକର ବାପା ନାହାନ୍ତି । କେଉଁ ଦେଶରେ ଦୁର୍ଭିକ୍ଷ ହୋଇଥିଲା । ସେହି ଘୋଡ଼ାଗୁଡ଼ିକ ଆମ ଗ୍ରାମରେ ବୁଲୁଥିଲେ । ସେହି ଝିଅଟି ତା ମା'କୁ ଦେଖି କାନ୍ଦୁଅଛି । ଏହି ଲତାରୁ ମୁଁ ଫୁଲଗୁଡ଼ିଏ ଆଣିବି । କେଉଁ ଦିଗରୁ ଶୀତଳ ପବନ ଆସୁଅଛି । ଏହି ଜିନିଷ ତୁମ ଦୋକାନରେ ନ ଥିଲା । ତାଙ୍କ ମିତ୍ରମାନେ ଆଜ ସନ୍ଧ୍ୟାରେ ନିଶ୍ଚୟ (ନୂନମ୍) ଆସିବେ । ଏହି ବିପଦରୁ ଗ୍ରାମ ମୋତେ ରକ୍ଷା କରିବେ ।

୨। ସଂଶୋଧନ କର—ଅମୀ ସ୍ତ୍ରୀୟଃ ନଦ୍ୟଂ ଗଚ୍ଛନ୍ତି । ଅସ୍ୟ ଲତାସ୍ୟାଃ ପୁଷ୍ପମସ୍ତି । ଅସ୍ମିନ୍ ବିପଦେ ମମ ଭଗବାନଃ ସହାୟଃ । ଅମୂଷ୍ମୈ ଦରିଦ୍ରାୟ ଧନଂ ଦେହି । ଅସ୍ୟଂ ଅମ୍ବୁଃ ନିର୍ମଳଃ । ଅନ୍ୟଂ ଗୃହଂ ଗଚ୍ଛ ।

୩। ଏତଦ୍, ଯଦ୍, ଇଦମ୍, ଯୁଷ୍ମଦ୍ ଓ କିମ୍ ଶବ୍ଦର ଦ୍ୱିତୀୟା, ଚତୁର୍ଥୀ ଓ ଷଷ୍ଠୀ ବିଭକ୍ତିରେ ରୂପ ଲେଖ ।

---

# ସଂଖ୍ୟାବାଚକ ବିଶେଷଣ

## 'ଅ' କାରାନ୍ତ [ପୁଂଲିଙ୍ଗ]

ଏକ (ଜଣେ, ଗୋଟିଏ) ଶବ୍ଦ ଏକବଚନାନ୍ତ; ମାତ୍ର କେହି କେହି ଅର୍ଥରେ ଏକ ଶବ୍ଦ ବହୁବଚନାନ୍ତ ହୁଏ । ଅନେକ ଶବ୍ଦ ବହୁବଚନାନ୍ତ । ଉକ୍ତ ଶବ୍ଦମାନଙ୍କର ରୂପ ସର୍ବ ଶବ୍ଦର ରୂପ ପରି ।

| | ଏକ | ଏକ (କେହି କେହି) | ଅନେକ (ବହୁତ) |
|---|---|---|---|
| ପ୍ରଥମା | ଏକଃ | ଏକେ | ଅନେକେ |
| ଦ୍ୱିତୀୟା | ଏକମ୍ | ଏକାନ୍ | ଅନେକାନ୍ |
| ତୃତୀୟା | ଏକେନ | ଏକୈଃ | ଅନେକୈଃ |
| ଚତୁର୍ଥୀ | ଏକସ୍ମୈ | ଏକେଭ୍ୟଃ | ଅନେକେଭ୍ୟଃ |
| ପଞ୍ଚମୀ | ଏକସ୍ମାତ୍ | ଏକେଭ୍ୟଃ | ଅନେକେଭ୍ୟଃ |
| ଷଷ୍ଠୀ | ଏକସ୍ୟ | ଏକେଷାମ୍ | ଅନେକେଷାମ୍ |
| ସପ୍ତମୀ | ଏକସ୍ମିନ୍ | ଏକେଷୁ | ଅନେକେଷୁ |
| ସମ୍ବୋଧନ | ଏକ | ଏକେ | ଅନେକେ |

[ସ୍ତ୍ରୀଲିଙ୍ଗ]

| | | | |
|---|---|---|---|
| ପ୍ରଥମା | ଏକା | | ଅନେକାଃ |
| ଦ୍ୱିତୀୟା | ଏକାମ୍ | | ଅନେକାଃ |

| | | |
|---|---|---|
| ତୃତୀୟା | ଏକୟା | ଅନେକାଭିଃ |
| ଚତୁର୍ଥୀ | ଏକସ୍ୟୈ | ଅନେକାଭ୍ୟଃ |
| ପଞ୍ଚମୀ | ଏକସ୍ୟାଃ | ଅନେକାଭ୍ୟଃ |
| ଷଷ୍ଠୀ | ଏକସ୍ୟାଃ | ଅନେକାସାମ୍ |
| ସପ୍ତମୀ | ଏକସ୍ୟାମ୍ | ଅନେକାସୁ |
| ସମ୍ବୋଧନ | ଏକେ | ଅନେକାଃ |

[କ୍ଲୀବଲିଙ୍ଗ]

| | | |
|---|---|---|
| ପ୍ରଥମା ଓ ଦ୍ୱିତୀୟା | ଏକମ୍ | ଅନେକାନି |
| ସମ୍ବୋଧନ | ଏକ | ଅନେକାନି |

ଅନ୍ୟ ବିଭକ୍ତିମାନଙ୍କରେ ପୁଂଲିଙ୍ଗ ପର ।

## 'ଇ' କାରାନ୍ତ ଓ 'ର୍' କାରାନ୍ତ [ପୁଂଲିଙ୍ଗ]

ଦ୍ୱି ଶବ୍ଦ ଦ୍ୱିବଚନାନ୍ତ, ତ୍ରି ଓ ଚତୁର୍ ଶବ୍ଦ ବହୁବଚନାନ୍ତ ।

| | ଦ୍ୱି (ଦୁଇ) | ତ୍ରି (ତିନି) | ଚତୁର୍ (ଚାରି) |
|---|---|---|---|
| ପ୍ରଥମା | ଦ୍ୱୌ | ତ୍ରୟଃ | ଚତ୍ୱାରଃ |
| ଦ୍ୱିତୀୟା | ଦ୍ୱୌ | ତ୍ରୀନ୍ | ଚତୁରଃ |
| ତୃତୀୟା | ଦ୍ୱାଭ୍ୟାମ୍ | ତ୍ରିଭିଃ | ଚତୁର୍ଭିଃ |
| ଚତୁର୍ଥୀ | ଦ୍ୱାଭ୍ୟାମ୍ | ତ୍ରିଭ୍ୟଃ | ଚତୁର୍ଭ୍ୟଃ |
| ପଞ୍ଚମୀ | ଦ୍ୱାଭ୍ୟାମ୍ | ତ୍ରିଭ୍ୟଃ | ଚତୁର୍ଭ୍ୟଃ |
| ଷଷ୍ଠୀ | ଦ୍ୱୟୋଃ | ତ୍ରୟାଣାମ୍ | ଚତୁର୍ଣାମ୍ |
| ସପ୍ତମୀ | ଦ୍ୱୟୋଃ | ତ୍ରିଷୁ | ଚତୁର୍ଷୁ |
| ସମ୍ବୋଧନ | ଦ୍ୱୌ | ତ୍ରୟଃ | ଚତ୍ୱାରଃ |

[ସ୍ତ୍ରୀଲିଙ୍ଗ]

| | | | |
|---|---|---|---|
| ପ୍ରଥମା | ଦ୍ୱେ | ତିସ୍ରଃ | ଚତସ୍ରଃ |
| ଦ୍ୱିତୀୟା | ଦ୍ୱେ | ତିସ୍ରଃ | ଚତସ୍ରଃ |
| ତୃତୀୟା | ଦ୍ୱାଭ୍ୟାମ୍ | ତିସୃଭିଃ | ଚତସୃଭିଃ |
| ଚତୁର୍ଥୀ | ଦ୍ୱାଭ୍ୟାମ୍ | ତିସୃଭ୍ୟଃ | ଚତସୃଭ୍ୟଃ |

| | | | |
|---|---|---|---|
| ପଞ୍ଚମୀ | ଦ୍ୱାଭ୍ୟାମ୍ | ତ୍ରିଭ୍ୟଃ | ଚତସୃଭ୍ୟଃ |
| ଷଷ୍ଠୀ | ଦ୍ୱୟୋଃ | ତିସୃଣାମ୍ | ଚତସୃଣାମ୍ |
| ସପ୍ତମୀ | ଦ୍ୱୟୋଃ | ତିସୃଷୁ | ଚତସୃଷୁ |
| ସମ୍ବୋଧନ | ଦ୍ୱେ | ତିସ୍ରଃ | ଚତସ୍ରଃ |

[କ୍ଲୀବଲିଙ୍ଗ]

| | | |
|---|---|---|
| ୧ମା, ୨ୟା ଓ ସ-ଦ୍ୱେ | ତ୍ରୀଣି | ଚତ୍ୱାରି |

ଅନ୍ୟ ବିଭକ୍ତିମାନଙ୍କରେ ପୁଂଲିଙ୍ଗ ପରି ।

## ତିନିଲିଙ୍ଗରେ ସମାନରୂପବିଶିଷ୍ଟ ସଂଖ୍ୟାବାଚକ ବିଶେଷଣ

ପଞ୍ଚନ୍ ଠାରୁ ଅଷ୍ଟାଦଶନ୍ ପର୍ଯ୍ୟନ୍ତ ବହୁବଚନାନ୍ତ ।

| | ପଞ୍ଚନ୍ (ପାଞ୍ଚ) | ଷଷ୍ (ଛ) | ଅଷ୍ଟନ୍ (ଆଠ) |
|---|---|---|---|
| ପ୍ରଥମା | ପଞ୍ଚ | ଷଟ୍ | ଅଷ୍ଟୌ, ଅଷ୍ଟ |
| ଦ୍ୱିତୀୟା | ପଞ୍ଚ | ଷଟ୍ | ଅଷ୍ଟୌ, ଅଷ୍ଟ |
| ତୃତୀୟା | ପଞ୍ଚଭିଃ | ଷଡ୍‌ଭିଃ | ଅଷ୍ଟାଭିଃ ଅଷ୍ଟଭିଃ |
| ଚତୁର୍ଥୀ | ପଞ୍ଚଭ୍ୟଃ | ଷଡ୍‌ଭ୍ୟଃ | ଅଷ୍ଟାଭ୍ୟଃ, ଅଷ୍ଟଭ୍ୟଃ |
| ପଞ୍ଚମୀ | ପଞ୍ଚଭ୍ୟଃ | ଷଡ୍‌ଭ୍ୟଃ | ଅଷ୍ଟାଭ୍ୟଃ, ଅଷ୍ଟଭ୍ୟଃ |
| ଷଷ୍ଠୀ | ପଞ୍ଚାନାମ୍ | ଷଣ୍ଣାମ୍ | ଅଷ୍ଟାନାମ୍ |
| ସପ୍ତମୀ | ପଞ୍ଚସୁ | ଷଟ୍‌ସୁ | ଅଷ୍ଟାସୁ, ଅଷ୍ଟସୁ |
| ସମ୍ବୋଧନ | ପଞ୍ଚ | ଷଟ୍ | ଅଷ୍ଟୌ, ଅଷ୍ଟ |

'ନ୍' କାରାନ୍ତ ସପ୍ତନ୍, ନବନ୍, ଦଶନ୍, ଏକାଦଶନ୍, ଦ୍ୱାଦଶନ୍, ତ୍ରୟୋଦଶନ୍, ଚତୁର୍ଦ୍ଦଶନ୍, ପଞ୍ଚଦଶନ୍, ଷୋଡ଼ଶନ୍, ସପ୍ତଦଶନ୍ ଓ ଅଷ୍ଟାଦଶନ୍ ଶବ୍ଦର ରୂପ ପଞ୍ଚନ୍ ଶବ୍ଦର ରୂପ ପରି ।

ଊନବିଂଶତିଠାରୁ ପରାର୍ଦ୍ଧ ପର୍ଯ୍ୟନ୍ତ ସଂଖ୍ୟାବାଚକ ଶବ୍ଦ ଏକବଚନାନ୍ତ । ସେଥିମଧ୍ୟରୁ କେତେକ ସ୍ତ୍ରୀଲିଙ୍ଗ, କେତେକ ପୁଂଲିଙ୍ଗ ଓ କେତେକ କ୍ଲୀବଲିଙ୍ଗ ।

### (କ) ସ୍ତ୍ରୀଲିଙ୍ଗସଂଖ୍ୟାବାଚକ ବିଶେଷଣ

ଊନବିଂଶତି, ବିଂଶତି, ଏକବିଂଶତି, ଦ୍ୱାବିଂଶତି, ତ୍ରୟୋବିଂଶତି,

ଚତୁର୍ବିଂଶତ, ପଞ୍ଚବିଂଶତ, ଷଡ଼୍‌ବିଂଶତ, ଷଷ୍ଟି (୬୦), ସପ୍ତତ (୭୦), ଅଶୀତ (୮୦), ନବତ (୯୦) ଓ କୋଟି ପ୍ରଭୃତ 'ଇ' କାରାନ୍ତ ସଂଖ୍ୟାବାଚକ ଶବ୍ଦମାନଙ୍କର ରୂପ ମତ ଶବ୍ଦର ରୂପ ପରି । ଯଥା—ଊନବିଂଶତଃ; ଊନବିଂଶତମ୍; ଊନବିଂଶତ୍ୟା; ଊନବିଂଶତ୍ୟୈ, ଊନବିଂଶତ୍ୟେ; ଊନବିଂଶତ୍ୟାଃ, ଊନବିଂଶତେଃ ଇତ୍ୟାଦ ।

ଊନତ୍ରିଂଶତ୍ (୨୯), ତ୍ରିଂଶତ୍ (୩୦), ଚତ୍ୱାରିଂଶତ୍ (୪୦) ଓ ପଞ୍ଚାଶତ୍ (୫୦) ପ୍ରଭୃତ 'ତ୍' କାରାନ୍ତ ସଂଖ୍ୟାବାଚକ ଶବ୍ଦମାନଙ୍କର ରୂପ ଭୂଭୃତ୍ ଶବ୍ଦର ରୂପ ପରି । ଯଥା—ଊନତ୍ରିଂଶତ୍, ଊନତ୍ରିଂଶତମ୍, ଊନତ୍ରିଂଶତା, ଊନତ୍ରିଂଶତେ, ଊନତ୍ରିଂଶତଃ, ଊନତ୍ରିଂଶତଃ, ଊନତ୍ରିଂଶତ, ଊନତ୍ରିଂଶତ୍ ।

(ଖ) ପୁଂଲିଙ୍ଗସଂଖ୍ୟାବାଚକ ବିଶେଷଣ

ବୃନ୍ଦ, ଶଙ୍ଖ ଓ ସାଗର ଶବ୍ଦର ରୂପ ନର ଶବ୍ଦର ରୂପ ପରି । ଯଥା—ବୃନ୍ଦଃ, ବୃନ୍ଦମ୍, ବୃନ୍ଦେନ ଇତ୍ୟାଦ ।

(ଗ) କ୍ଳୀବଲିଙ୍ଗସଂଖ୍ୟାବାଚକ ବିଶେଷଣ

ଶତ, ସହସ୍ର, ଅଯୁତ ଓ ଲକ୍ଷ ପ୍ରଭୃତ ଶବ୍ଦମାନଙ୍କର ରୂପ ଫଳ ଶବ୍ଦର ରୂପ ପରି । ଯଥା—ଶତମ୍, ଶତମ୍, ଶତେନ, ଶତାୟ, ଶତାତ୍, ଶତସ୍ୟ, ଶତେ ଇତ୍ୟାଦ ।

ଉକ୍ତ ସଂଖ୍ୟାବାଚକ ବିଶେଷଣଗୁଡ଼ିକ ଏକବଚନାନ୍ତ ହେଲେ ମଧ୍ଯ ଏମାନଙ୍କର ବିଶେଷ୍ୟଗୁଡ଼ିକ ବହୁବଚନାନ୍ତ ହୁଅନ୍ତି । ଯଥା—ବିଂଶତଃ ବାଳକାଃ, ଶତଂ ଗଜାଃ ଓ ପଞ୍ଚାଶତ୍ ବାଳକାଃ ଇତ୍ୟାଦ ।

ଦୁଇଗୁଣ କମ୍ବା ବହୁଗୁଣ ବୁଝାଉଥିଲେ ଏହି ସଂଖ୍ୟାବାଚକ ବିଶେଷଣ ଦ୍ୱିବଚନାନ୍ତ କମ୍ବା ବହୁବଚନାନ୍ତ ହୁଅନ୍ତି । ଯଥା—ଦ୍ୱେ ଶତେ (୨୦୦), ତ୍ରୀଣି ଶତାନ (୩୦୦) ଓ ଦ୍ୱେ ବିଂଶତୀ (ଦୁଇକୋଡ଼ି) ଇତ୍ୟାଦ ।

ତିନିଲିଙ୍ଗରେ ସମାନରୂପବିଶିଷ୍ଟ ପରିମାଣବାଚକ ବିଶେଷଣ

କତ (କେତେ) ଶବ୍ଦ ବହୁବଚନାନ୍ତ । ପ୍ରଥମା ଓ ଦ୍ୱିତୀୟା ବିଭକ୍ତି ବ୍ୟତୀତ ଅନ୍ୟ ବିଭକ୍ତିରେ ମୁନି ଶବ୍ଦର ବହୁବଚନର ରୂପ ପରି ରୂପ କରାଯାଏ । ଯଥା—କତ, କତ, କତଭିଃ, କତଭ୍ୟଃ, କତଭ୍ୟଃ, କତୀନାମ୍, କତଷୁ, କତ ।

## ପୂରଣବାଚକ ବିଶେଷଣ (ତିନିଲିଙ୍ଗ)

| | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | କ୍ଲୀବଲିଙ୍ଗ |
|---|---|---|---|
| ପ୍ରଥମ — | ପ୍ରଥମଃ | ପ୍ରଥମା | ପ୍ରଥମମ୍ |
| ଦ୍ୱିତୀୟ — | ଦ୍ୱିତୀୟଃ | ଦ୍ୱିତୀୟା | ଦ୍ୱିତୀୟମ୍ |
| ତୃତୀୟ — | ତୃତୀୟଃ | ତୃତୀୟା | ତୃତୀୟମ୍ |
| ଚତୁର୍ଥ — | ଚତୁର୍ଥଃ | ଚତୁର୍ଥୀ | ଚତୁର୍ଥମ୍ |
| ପଞ୍ଚମ — | ପଞ୍ଚମଃ | ପଞ୍ଚମୀ | ପଞ୍ଚମମ୍ |
| ଷଷ୍ଠ — | ଷଷ୍ଠଃ | ଷଷ୍ଠୀ | ଷଷ୍ଠମ୍ |
| ସପ୍ତମ — | ସପ୍ତମଃ | ସପ୍ତମୀ | ସପ୍ତମମ୍ |
| ଅଷ୍ଟମ — | ଅଷ୍ଟମଃ | ଅଷ୍ଟମୀ | ଅଷ୍ଟମମ୍ |
| ନବମ — | ନବମଃ | ନବମୀ | ନବମମ୍ |
| ଦଶମ — | ଦଶମଃ | ଦଶମୀ | ଦଶମମ୍ |
| ଏକାଦଶ — | ଏକାଦଶଃ | ଏକାଦଶୀ | ଏକାଦଶମ୍ |
| ବିଂଶତିତମ — | ବିଂଶତିତମଃ | ବିଂଶତିତମୀ | ବିଂଶତିତମମ୍ |
| ଶତତମ — | ଶତତମଃ | ଶତତମୀ | ଶତତମମ୍ |

କେତେକ ଶବ୍ଦର ବୈଶିଷ୍ଟ୍ୟ:—

୧ । ବୃକ୍ଷକୁ ବୁଝାଇଲେ ବୃକ୍ଷବାଚକ ଶବ୍ଦ ପୁଂଲିଙ୍ଗ ଓ ଫଳ କିମ୍ବା ଫୁଲକୁ ବୁଝାଇଲେ କ୍ଲୀବଲିଙ୍ଗ ହୁଏ । ଯଥା: — ଗୁବାକଃ (ଗୁଆଗଛ), ଗୁବାକମ୍ (ଗୁଆ) । ପାଟଲଃ (ଗୋଲାପଗଛ), ପାଟଲମ୍(ଗୋଲାପଫୁଲ) ଇତ୍ୟାଦି ।

୨ । ସ୍ତ୍ରୀ, ନାରୀ ଓ ରମଣୀ ପ୍ରଭୃତି ଶବ୍ଦଶେଷରେ ଲୋକ କିମ୍ବା ଜନ ଶବ୍ଦ ଲାଗିଲେ ତାହା ପୁଂଲିଙ୍ଗ ହୁଏ । ଯଥା: — ଏତେ ସ୍ତ୍ରୀଲୋକାଃ ଇତ୍ୟାଦି ।

୩ । ଦେଶ ଓ ପ୍ରଦେଶବାଚକ ଶବ୍ଦ ପ୍ରାୟ ବହୁବଚନାନ୍ତ ହୁଏ । ଯଥା: — ଉତ୍କଳାଃ ଓ ବଙ୍ଗାଃ ପ୍ରଭୃତି; କିନ୍ତୁ ଦେଶ ଓ ବିଷୟ ପ୍ରଭୃତି ଶବ୍ଦ-ଯୋଗରେ ଏହା ଏକବଚନାନ୍ତ ହୁଏ । ଯଥା: — ମଗଧଦେଶେ, କଳିଙ୍ଗ-ବିଷୟେ ଇତ୍ୟାଦି । 'ଦେଶବାଚକାଃ ପ୍ରାୟେଣ ବହୁବାଚକାଃ'

୪ । ଗଣ, ସଙ୍ଘ, ସମୂହ ଓ ସମାଜ ପ୍ରଭୃତ ସମୂହବାଚକ ଶବ୍ଦ ବହୁତ୍ୱ-ବୋଧକ ହେଲେ ମଧ୍ଯ ଏକବଚନାନ୍ତ ଓ ପୁଂଲିଙ୍ଗ ହୁଅନ୍ତି । ଯଥା:— ମାନବଗଣଃ, ଜାତିସଙ୍ଘଃ ଓ ଗ୍ରାମସମାଜଃ ଇତ୍ୟାଦି ।

୫ । ଶରଣ, କାରଣ, ପ୍ରମାଣ, ପାତ୍ର, ଆସ୍ପଦ, ସ୍ଥାନ, ପଦ, ଭାଜନ, ନିଦାନ ଓ ମୂଳ ପ୍ରଭୃତ ଶବ୍ଦ ସର୍ବଦା କ୍ଲୀବଲିଙ୍ଗ ଓ ବହୁବଚନାନ୍ତ ହୁଅନ୍ତି । ଏଗୁଡ଼ିକୁ 'ଅଜହଲ୍ଲିଙ୍ଗ' କୁହାଯାଏ । ଯଥା—ଗୁଣାଃ ପୂଜାସ୍ଥାନମ୍ । ମାତା ଭକ୍ତିଭାଜନମ୍ । ଭବନ୍ତଃ ପ୍ରମାଣମ୍ । ସମ୍ପଦଃ ପଦମାପଦାମ୍ ଇତ୍ୟାଦି ।

## ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:—ଶହେ ଜଣ ବାଳକ କାଲି (ହ୍ୟଃ) ରାଜାଙ୍କ ଘରେ ମିଠେଇ ଖାଇଥିଲେ । ତିରିଶ ଟଙ୍କାରେ ଅଣତିରିଶଟି ବହି କିଣି (କ୍ରୀତ୍ୱା) ବିକିଥିଲି (ବିକ୍ରୀତବାନ୍) । ତୁମ୍ଭର କେତୋଟି ଗାଈ ? ମୋର ଦଶଟି ଦୁଧିଆଳୀ (ପୟସ୍ୱିନ୍ୟଃ) ଗାଈ ଅଛନ୍ତି । ଆଜିଠାରୁ ଦ୍ୱାଦଶ ଦିନରେ ସେମାନେ ଘରକୁ ଫେରିବେ । ଗୋଟିଏ ମୃଗ ଏଠାରେ ବୁଲୁଥିଲା । କେହି କେହି ନିଜର ଦୋଷ ଦେଖି ଦୁଃଖିତ ହୁଅନ୍ତି । ଅନେକଗୁଡ଼ିଏ ନଡ଼ିଆଗଛ ଏ ସ୍ଥାନରେ ଥିଲା । ଦୁଇଟି ଶିଶୁ ତାଙ୍କ ବାପାଙ୍କଠାରୁ ଗପ ଶୁଣୁଅଛନ୍ତି ।

୨ । ସଂଶୋଧନ କର—ପଞ୍ଚାଃ ଧେନବଃ ଚରନ୍ତି । ପଞ୍ଚବିଂଶତୟଃ ମୁଦ୍ରାଣି ସନ୍ତି । କତୟଃ ମୃଗାଃ ଧାବନ୍ତି । ତେ ପିତାଃ କୁତ୍ର ଗତାଃ । ଏସଃ ଶିଷ୍ୟଃ ମେ ଏବ ଭ୍ରାତା । ଅନେକାନାଂ ଲୋକାନ ନ ସନ୍ତି । ଏକାଃ (କେହି କେହି) ବଦନ୍ତି । ତ୍ରୀନ୍ ଗ୍ରନ୍ଥଂ ପାଠୟ ।

# ସ୍ତ୍ରୀପ୍ରତ୍ୟୟ (ଲିଙ୍ଗପରିବର୍ତ୍ତନ)

ପ୍ରାତିପଦିକ (ଶବ୍ଦ)କୁ ସ୍ତ୍ରୀଲିଙ୍ଗରେ ପରିଣତ କରିବା ପାଇଁ ତାହା ଶେଷରେ ଆପ୍, ଈପ୍, ଆନୀପ୍, ଊଙ୍ ଓ ତି ପ୍ରଭୃତି ଯେଉଁ ସବୁ ପ୍ରତ୍ୟୟ ଯୋଗ କରାଯାଏ, ସେଗୁଡ଼ିକୁ ସ୍ତ୍ରୀପ୍ରତ୍ୟୟ କହନ୍ତି ।

## ଟାପ୍ ବା ଆପ୍ (ଆ)

୧ । ଅଜ—ଅଜା — କୋକିଳ—କୋକିଳା

ଅଶ୍ୱ—ଅଶ୍ୱା — ମୂଷିକ—ମୂଷିକା

କାରକ—କାରିକା — ବାଳକ—ବାଳିକା

ପାଚକ—ପାଚିକା — ଗାୟକ—ଗାୟିକା

ସୂତ୍ର—ଅଜ ପ୍ରଭୃତି ଅକାରାନ୍ତ ଶବ୍ଦରୁ ଉତ୍ତର ଟାପ୍ ପ୍ରତ୍ୟୟ ହୁଏ ଓ ଏହି ପ୍ରତ୍ୟୟ ପରେ ଥିଲେ ପ୍ରତ୍ୟୟସମ୍ବନ୍ଧୀ 'କ'ର ପୂର୍ବସ୍ଥିତ 'ଅ' ସ୍ଥାନରେ 'ଇ' ହୁଏ । 'ଅଜାଦ୍ୟତଷ୍ଟାପ୍'

## ଙୀପ୍ ବା ଈପ୍ (ଈ)

୨ । ଗୌର—ଗୌରୀ — ନଦ—ନଦୀ

କୁମାର – କୁମାରୀ — ଦେବ – ଦେବୀ

ସୂତ୍ର – ଗୌର ପ୍ରଭୃତି ଶବ୍ଦରୁ ଉତ୍ତର ଙୀପ୍ ପ୍ରତ୍ୟୟ ହୁଏ ।

୩ । ବ୍ରାହ୍ମଣ – ବ୍ରାହ୍ମଣୀ — ସିଂହ – ସିଂହୀ

ଗବୟ – ଗବୟୀ — ମନୁଷ୍ୟ – ମନୁଷୀ } 'ଯ'ର ଲୋପ

ହୟ – ହୟୀ — ମତ୍ସ୍ୟ – ମତ୍ସୀ } ହୁଏ ।

ସୂତ୍ର – ଜାତି ବୁଝାଇଲେ ଯକାର*ଉପଧାରେ ନ ଥିବା ଅକାରାନ୍ତ ଶବ୍ଦରୁ ଉତ୍ତର ଙୀପ୍ ପ୍ରତ୍ୟୟ ହୁଏ; ମାତ୍ର ଗବୟ, ହୟ, ମନୁଷ୍ୟ ଓ ମତ୍ସ୍ୟ ଶବ୍ଦର ଯକାର ଉପଧାରେ ଥିଲେ ମଧ୍ୟ ଙୀପ୍ ପ୍ରତ୍ୟୟ ହୁଏ ।

'ଜାତେରସ୍ତ୍ରୀବିଷୟାଦଯୋପଧାତ୍'

---

*ଅନ୍ତ୍ୟବର୍ଣ୍ଣର ଠିକ୍ ପୂର୍ବ ବର୍ଣ୍ଣକୁ ଉପଧା କୁହାଯାଏ । 'ଅନ୍ତ୍ୟାତ୍-ପୂର୍ବୋପଧା' । ଯଥା—ରାମ – (ର୍ ଆ ମ୍ ଅ) ଏଠାରେ 'ମ୍' ଉପଧା ।

୪ । କ୍ଷତ୍ରିୟ — କ୍ଷତ୍ରିୟୀ                    ବୈଶ୍ୟ — ବୈଶ୍ୟୀ
ଗୋପ — ଗୋପୀ                    ଶୂଦ୍ର — ଶୂଦ୍ରୀ

ସୂତ୍ର — ପତ୍ନୀ ଅର୍ଥରେ ଜାତିବାଚକ ଅକାରାନ୍ତ ଶବ୍ଦରୁ ଉତ୍ତର ଙୀପ୍ ପ୍ରତ୍ୟୟ ହୁଏ । 'ଜାତେରସ୍ତ୍ରୀବିଷୟାଦଯୋପଧାତ୍'

୫ । ଦାତୃ — ଦାତ୍ରୀ                    କର୍ତ୍ତୃ — କର୍ତ୍ତ୍ରୀ
ଗୁଣିନ୍ — ଗୁଣିନୀ                    ରାଜନ୍ — ରାଜ୍ଞୀ

ସୂତ୍ର — 'ଋ' କାରାନ୍ତ ଓ 'ନ୍' କାରାନ୍ତ ଶବ୍ଦରୁ ଉତ୍ତର ଙୀପ୍ ପ୍ରତ୍ୟୟ ହୁଏ । 'ଋନ୍ନେଭ୍ୟୋ ଙୀପ୍'

୬ । ଶ୍ରୀମତ୍ — ଶ୍ରୀମତୀ                    ଗୁଣବତ୍ — ଗୁଣବତୀ
ପ୍ରେୟସ୍ — ପ୍ରେୟସୀ                    ଦଦତ୍ — ଦଦତୀ
କୃତବତ୍ — କୃତବତୀ                    ଗତବତ୍ — ଗତବତୀ

ସୂତ୍ର — ମତୁପ୍, ବତୁପ୍, ଈୟସୁ, କ୍ତବତୁ ଓ ଶତୃ ପ୍ରଭୃତି ପ୍ରତ୍ୟୟନିଷ୍ପନ୍ନ ଶବ୍ଦରୁ ଉତ୍ତର ଙୀପ୍ ପ୍ରତ୍ୟୟ ହୁଏ ।

୭ । ଗଚ୍ଛତ୍ — ଗଚ୍ଛନ୍ତୀ                    ନୃତ୍ୟତ୍ — ନୃତ୍ୟନ୍ତୀ
କାରୟତ୍ — କାରୟନ୍ତୀ                    ପୁତ୍ରୀୟତ୍ — ପୁତ୍ରୀୟନ୍ତୀ
କଥୟତ୍ — କଥୟନ୍ତୀ                    ଜିଗମିଷତ୍ — ଜିଗମିଷନ୍ତୀ

ସୂତ୍ର — ଈପ ପ୍ରତ୍ୟୟ ପରେ ଥିଲେ ଭ୍ୱାଦି, ଚୁରାଦି ଓ ଦିବାଦିଗଣୀୟ ଧାତୁସମ୍ବନ୍ଧୀ ଏବଂ ଣିଜନ୍ତ, ସନ୍ନନ୍ତ ଓ ନାମଧାତୁସମ୍ବନ୍ଧୀ ଶତୃପ୍ରତ୍ୟୟାନ୍ତ ଶବ୍ଦର 'ତ୍' ସ୍ଥାନରେ 'ନ୍ତ୍' ହୁଏ ।

୮ । ଇଚ୍ଛତ୍ — ଇଚ୍ଛତୀ, ଇଚ୍ଛନ୍ତୀ                    ଯାତ୍ — ଯାତୀ, ଯାନ୍ତୀ

ସୂତ୍ର — ଈପ୍ ପ୍ରତ୍ୟୟ ପରେ ଥିଲେ ତୁଦାଦିଗଣୀୟ ଧାତୁସମ୍ବନ୍ଧୀ ଏବଂ ଅଦାଦିଗଣୀୟ ଅକାରାନ୍ତ ଧାତୁସମ୍ବନ୍ଧୀ ଶତୃ ପ୍ରତ୍ୟୟାନ୍ତ ଶବ୍ଦର ବିକଳ୍ପେ 'ତ୍' ସ୍ଥାନରେ 'ନ୍ତ୍' ହୁଏ ।

୯ । ଲଘୁ— ଲଘ୍ଵୀ, ଲଘୁଃ  ଗୁରୁ — ଗୁର୍ବୀ, ଗୁରୁଃ

ସୂତ୍ର— ସଂଯୁକ୍ତବର୍ଣ୍ଣ ଉପଧାରେ ନ ଥିବା ଗୁଣବାଚକ (ବିଶେଷଣ) ଉକାରାନ୍ତ ଶବ୍ଦରୁ ଉତ୍ତର ବିକଳ୍ପେ ଙୀପ୍ ପ୍ରତ୍ୟୟ ହୁଏ ।

'ଗୁଣବାଚକାଦସଂଯୁକ୍ତୋପଧାଦୁଦନ୍ତାଦ୍ ବା'

୧୦ । ପତି — ପତ୍ନୀ

ସୂତ୍ର— ଯଜ୍ଞର ଫଳଭାଗିତ୍ୱ ବୁଝାଇଲେ ପତି ଶବ୍ଦରୁ ଉତ୍ତର ଙୀପ୍ ପ୍ରତ୍ୟୟ ହୁଏ ଓ 'ଇ' ସ୍ଥାନରେ 'ନ୍' ହୁଏ । 'ପତ୍ୟୁର୍ନୋ ଯଜ୍ଞସଂଯୋଗେ'

୧୧ । ମୁନି— ମୁନୀ  କବି — କବୀ

ସୂତ୍ର — ଇ କାରାନ୍ତ ମନୁଷ୍ୟଜାତିବାଚକ ଶବ୍ଦରୁ ଉତ୍ତର ଙୀପ୍ ପ୍ରତ୍ୟୟ ହୁଏ ।

'ଇତୋ ମନୁଷ୍ୟଜାତେଃ'

## ଆନୀପ୍ (ଆନୀ)

୧୨ । ଇନ୍ଦ୍ର — ଇନ୍ଦ୍ରାଣୀ  ଭବ — ଭବାନୀ

ବ୍ରହ୍ମନ୍ — ବ୍ରହ୍ମାଣୀ  ବରୁଣ — ବରୁଣାନୀ

ସୂତ୍ର — ଇନ୍ଦ୍ରପ୍ରଭୃତିଶବ୍ଦରୁ ଉତ୍ତର ଆନୀପ୍ ପ୍ରତ୍ୟୟ ହୁଏ । 'ଇନ୍ଦ୍ରାଦେରାନୀପ୍'

୧୩ । ହିମ—ହିମାନୀ (ଅତିହିମ)  ଅରଣ୍ୟ – ଅରଣ୍ୟାନୀ (ବଡ଼ବଣ)

ଯବ—ଯବାନୀ (ଦୁଷ୍ଟଯବ)  ଯବନ – ଯବନାନୀ (ଯବନାକ୍ଷର)

ସୂତ୍ର—ହିମପ୍ରଭୃତି ଶବ୍ଦରୁ ଉତ୍ତର ବିଶେଷ ବିଶେଷ ଅର୍ଥରେ ଆନୀପ୍ ପ୍ରତ୍ୟୟ ହୁଏ । 'ହିମାଦେରର୍ଥବିଶେଷେ'

## ଙୀପ୍ ଓ ଟାପ୍

୧୪ । ଚନ୍ଦ୍ରମୁଖ—ଚନ୍ଦ୍ରମୁଖୀ, ଚନ୍ଦ୍ରମୁଖା  ସୁନଖ—ସୁନଖୀ, ସୁନଖା

ସୁକ୍ରୋଡ଼ —ସୁକ୍ରୋଡ଼ା  ଗୁରୁଶିଖ—ଗୁରୁଶିଖା

ସୂତ୍ର – ଅଙ୍ଗବାଚକ ଶବ୍ଦରୁ ଉତ୍ତର ଙୀପ୍ ଓ ଟାପ୍ ପ୍ରତ୍ୟୟ ହୁଏ;ମାତ୍ର କ୍ରୋଡ଼ ପ୍ରଭୃତି ଶବ୍ଦରୁ ଉତ୍ତର କେବଳ ଟାପ୍ ପ୍ରତ୍ୟୟ ହୁଏ । 'ସ୍ୱାଙ୍ଗାଦ୍ ବା'

୧୫ । ଜିତେନ୍ଦ୍ର – ଜିତେନ୍ଦ୍ରା                    ପଦ୍ମହସ୍ତ – ପଦ୍ମହସ୍ତା

ସୂତ୍ର – ଅଙ୍ଗ, ଗାତ୍ର, କଣ୍ଠ, ପୁଚ୍ଛ, ଓଷ୍ଠ, ଜଙ୍ଘ, ଦନ୍ତ, କର୍ଣ୍ଣ ଓ ଶୃଙ୍ଗ ଶବ୍ଦ ବ୍ୟତୀତ ସଂଯୁକ୍ତ ବର୍ଣ୍ଣ ଉପଧାରେ ଥିବା ଅଙ୍ଗବାଚକ ଶବ୍ଦରୁ ଉତ୍ତର କେବଳ ଟାପ୍ ପ୍ରତ୍ୟୟ ହୁଏ; ମାତ୍ର କୃଶାଙ୍ଗ—କୃଶାଙ୍ଗୀ, କୃଶାଙ୍ଗୀ; ବିମ୍ବୋଷ୍ଠ—ବିମ୍ବୋଷ୍ଠା, ବିମ୍ବୋଷ୍ଠୀ ଇତ୍ୟାଦି ।

## ଊଙ୍ (ଊ)

୧୬ । ତନୁ—ତନୂଃ, ତନୁଃ                    ଚଞ୍ଚୁ—ଚଞ୍ଚୂଃ, ଚଞ୍ଚୁଃ

ସୂତ୍ର – ତନୁ ପ୍ରଭୃତି ଶବ୍ଦରୁ ଉତ୍ତର ବିକଳ୍ପେ ଊଙ୍ ପ୍ରତ୍ୟୟ ହୁଏ ।

'ବା ତନ୍ୱାଦେରୂଙ୍'

## ତି

ଯୁବନ୍—ଯୁବତିଃ

ସୂତ୍ର – ଯୁବନ୍ ଶବ୍ଦରୁ ଉତ୍ତର ତି ପ୍ରତ୍ୟୟ ହୁଏ ଓ ନ୍‌ର ଲୋପ ହୁଏ ।

କେତେଗୁଡ଼ିଏ ପ୍ରଚଳିତ ଶବ୍ଦର ସ୍ତ୍ରୀଲିଙ୍ଗରେ ପରିବର୍ତ୍ତନ । ଯଥା –

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ଯୁବ | ଯୁବା | ତରୁଣ | ତରୁଣୀ |
| ତାରକ | ତାରକା, ତାରିକା | ନଟ | ନଟୀ |
| କୁର୍ବତ୍ | କୁର୍ବତୀ | ଶ୍ୱନ୍ | ଶୁନୀ |
| ଜିତେନ୍ଦ୍ର | ଜିତେନ୍ଦ୍ରା | ରଜକ | ରଜକୀ |
| ଚନ୍ଦ୍ରବଦନ | ଚନ୍ଦ୍ରବଦନା | ଶାସତ୍ | ଶାସତୀ |
| ବାର୍ଷିକ | ବାର୍ଷିକୀ | ବିଭ୍ୟତ୍ | ବିଭ୍ୟତୀ |
|  |  | ରୁଦତ୍ | ରୁଦତୀ |
| ନବୀନ | ନବୀନା | ଜାଗ୍ରତ୍ | ଜାଗ୍ରତୀ |
| ନର୍ତ୍ତକ | ନର୍ତ୍ତକୀ | ମଘବନ୍ | ମଘୋନୀ, ମଘବତୀ |
| ବେଗିନ୍ | ବେଗିଣୀ | ପ୍ରତ୍ୟଚ୍ | ପ୍ରତୀଚୀ, ପ୍ରତ୍ୟଞ୍ଚୀ |
| ଶିବ | ଶିବା | *ପୂତ୍ର(ପୂତ୍ରୁ) | ପୂତ୍ରୀ (ପୂତ୍ରୁୀ) |

* 'ଅମାଦେକ୍ରୁ' 'ପୂଙ୍ଗ୍ ଦ୍ୱୟୋଃ' ଇତି ପୂଙ୍ଗ୍ (ପବନେ)+କ୍ରୁ – ପୂତ୍ରଃ ଏବଂ ପୂତ୍ର+ଙୀ+ଅ – ପୂତ୍ରୁଃ ।

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ଧାର୍ମିକ | ଧାର୍ମିକା | ପ୍ରାଚ୍ | ପ୍ରାଚୀ, ପ୍ରାଞ୍ଚୀ |
| କ୍ରୀଡ଼ତ୍ | କ୍ରୀଡ଼ନ୍ତୀ | ଉଦଚ୍ | ଉଦୀଚୀ, ଉଦଞ୍ଚୀ |
| ଖନକ | ଖନକୀ | ଯବନ | ଯବନୀ, ଯବନାନୀ |
| ସଭାପତି | ସଭାପତିଃ | ମନୁ | ମନାୟୀ, ମନାବୀ, ମନୁଃ |
| ଗ୍ରାମପତି | ଗ୍ରାମପତିଃ | ସୁକେଶ | ସୁକେଶା, ସୁକେଶୀ |
| ମହାରାଜ | ମହାରାଜୀ | ସୂର୍ଯ୍ୟ | ସୂରୀ, ସୂର୍ଯ୍ୟା |
| ବିଦ୍ୱସ୍ | ବିଦୁଷୀ | ତନୁ (କ୍ଷୀଣ) | ତନ୍ୱୀ, ତନୁଃ |
| ଅଗ୍ନି | ଅଗ୍ନାୟୀ | ସାଧୁ | ସାଧ୍ୱୀ, ସାଧୁଃ |
| ନୃ, ନର | ନାରୀ | ମୃଦୁ | ମୃଦ୍ୱୀ, ମୃଦୁଃ |
| ସଖି | ସଖୀ | ପଟୁ | ପଟ୍ୱୀ, ପଟୁଃ |
| ମୃଡ଼ | ମୃଡ଼ାନୀ | ନାପିତ | ନାପିତୀ, ନାପିତା |
| ଶର୍ବ | ଶର୍ବାଣୀ | ଆର୍ଯ୍ୟ | ଆର୍ଯ୍ୟା, ଆର୍ଯ୍ୟାଣୀ |
| ରୁଦ୍ର | ରୁଦ୍ରାଣୀ | ପାଣିଗୃହୀତ | ପାଣିଗୃହୀତୀ, |
| ଶ୍ୱଶୁର | ଶ୍ୱଶ୍ରୂଃ | | ପାଣିଗୃହୀତା |
| ପୁମସ୍ | ପୁଂସୀ | କ୍ଷତ୍ରିୟ | କ୍ଷତ୍ରିୟା, କ୍ଷତ୍ରିୟୀ, |
| ହନ୍ତୃ | ହନ୍ତ୍ରୀ | | କ୍ଷତ୍ରିୟାଣୀ |
| ଯୁବନ୍ | ଯୁବତିଃ, ଯୁବତୀ | ଉପାଧ୍ୟାୟ | ଉପାଧ୍ୟାୟା |
| ପଥିକ | ପଥିକା | | ଉପାଧ୍ୟାୟୀ, |
| ସ୍ଥୂଳ | ସ୍ଥୂଳୀ, ସ୍ଥୂଳା | | ଉପାଧ୍ୟାୟାନୀ |
| ବୈଶ୍ୟ | ବୈଶ୍ୟୀ, ବୈଶ୍ୟା | ମାତୁଳ | ମାତୁଳା, ମାତୁଳୀ, |
| ଶୂଦ୍ର | ଶୂଦ୍ରା, ଶୂଦ୍ରୀ | | ମାତୁଳାନୀ |

## ପ୍ରଶ୍ନ

୧ । ସ୍ତ୍ରୀଲିଙ୍ଗରେ ପରିବର୍ତ୍ତନ କର — ମେଧାବତ୍, ଧାବତ୍, ନେତୃ, ବାଳ, ଧର୍ମିନ୍, ସୁଖିନ୍, ସେବକ, କିଙ୍କର ଓ ପକ୍ଷିନ୍ ।

୨ । ରୁଦ୍ରା, ଚନ୍ଦ୍ରବଦନୀ, ହସ୍ତୀ ଓ ହିମା—ଏଗୁଡ଼ିକୁ ଶୁଦ୍ଧ କରି ଲେଖ ।

## * ଅବ୍ୟୟ

ସବୁ ଲିଙ୍ଗ, ସବୁ ବିଭକ୍ତି ଓ ସବୁ ବଚନରେ ସମାନ ରହୁଥିବା ପଦ ଅବ୍ୟୟ । ଯଥା:— ପ୍ରାତଃ—ସ ପ୍ରାତଃ ପଠତି (ସେ ସକାଳେ ପଢ଼େ) । ସ ପ୍ରାତଃ ସାୟଂ ଯାବତ୍ ପଠତି (ସେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ପଢ଼ୁଅଛି) ।

ଅବ୍ୟୟର ଶେଷରେ ଥିବା ର୍ ଓ ସ୍ ସ୍ଥାନରେ ବିସର୍ଗ ହୁଏ । ଯଥା— ପ୍ରାତର୍ = ପ୍ରାତଃ ଓ ବହିସ୍ = ବହିଃ ଇତ୍ୟାଦି ।

କ୍ତ୍ୱାର୍, ଲ୍ୟପ୍, ତୁମୁନ୍, ଣମୁଲ୍, ଧାର୍, ଥାଚ୍, ତ୍ରଲ୍, ଚ୍ୱି, ଶସ୍, ବତୁପ୍, ସୁଚ୍ ଓ କୃତ୍ୱସୁଚ୍ ପ୍ରଭୃତି ପ୍ରତ୍ୟୟନିଷ୍ପନ୍ନ ପଦ ଅବ୍ୟୟ । ଯଥା — ପଠିତ୍ୱା, ଆଦାୟ, ଗନ୍ତୁମ୍, ସ୍ମାରଂ ସ୍ମାରମ୍, ଦ୍ୱିଧା, ଯଥା, କୁତ୍ର, ଦୃଢୀକୃତମ୍, ବହୁଶଃ, ମାତୃବତ୍, ତ୍ରିଃ ଓ ପଞ୍ଚକୃତ୍ୱଃ ଇତ୍ୟାଦି ।

## କେତେଗୁଡ଼ିଏ ବ୍ୟବହାର୍ଯ୍ୟ ଅବ୍ୟୟ

ଅତଃ—ଅତଏବ
ଅତୀବ, ନିତରାମ୍ — ଅତ୍ୟନ୍ତ
ଅଥ — ଏହାପରେ
ଅଦ୍ୟ—ଆଜି
ଦ୍ୱିଃ — ଦୁଇଥର
ତ୍ରିଃ — ତିନିଥର
ଅଧଃ — ତଳେ
ଅଧୁନା—ବର୍ତ୍ତମାନ
ଅନ୍ୟଥା— ନୋହିଲେ
ଏକୈକଶଃ — ଗୋଟି ଗୋଟି ହୋଇ

କୁତଃ — କେଉଁଠାରୁ
କୁତ୍ର — କେଉଁଠାରେ
କୃତେ— ନିମନ୍ତେ
ଚ — ଏବଂ, ଓ
ବା —କିମ୍ବା
ସପ୍ତକୃତ୍ୱଃ — ସାତଥର
ଚେତ୍ —ଯଦି
ମିଥ୍ୟା —ମିଛ
ଯତଃ — କାରଣ, ଯେହେତୁ
ତର୍ହି — ତେବେ

---

* ସଦୃଶଂ ତ୍ରିଷୁ ଲିଙ୍ଗେଷୁ ସର୍ବାସୁ ଚ ବିଭକ୍ତିଷୁ ।
ବଚନେଷୁ ଚ ସର୍ବେଷୁ ଯନ୍ନ ବ୍ୟେତି ତଦବ୍ୟୟମ୍ ॥

| | |
|---|---|
| ଅନ୍ୟତ୍ର—ଅନ୍ୟସ୍ଥାନରେ | ତୁ, ପରନ୍, ପରନ୍ତୁ — କିନ୍ତୁ |
| ଅପିଚ — ଆହୁରି ମଧ୍ଯ | ତୁଷ୍ଣୀମ୍ — ତୁନି |
| ଅସକୃତ୍ – ବାରମ୍ବାର | ଦିବା — ଦିନ |
| ଅପ୍ରାମ୍ପ୍ରତମ୍—ଅନୁଚିତ | ସାୟମ୍ – ସନ୍ଧ୍ୟା |
| ଆଶୁ — ଶୀଘ୍ର | ନକ୍ତମ୍ — ରାତି |
| ଇତଃ — ଏଠାରୁ | ପ୍ରାତଃ — ପ୍ରଭାତ |
| ଇତ୍ଥମ୍, ଏବମ୍ – ଏହିପରି | ନୋଚେତ୍—ନୋହିଲେ |
| ଈଷତ୍—ଅଳ୍ପ | ପରଶ୍ୱଃ—ପହରଦିନ |
| ଉଚ୍ଚୈଃ—ଉଚ୍ଚରେ | ହ୍ୟଃ —ଗତକାଲି |
| ଉପରି – ଉପରେ | ଶ୍ୱଃ —ଆସନ୍ତା କାଲି |
| ଐଷମଃ – ଏହିବର୍ଷ | ପରାରି—ବିଗତବର୍ଷ |
| ପରେଦ୍ୟୁଃ—ପରଦିନ | ପରୁତ୍—ଗତବର୍ଷ |
| ପଶ୍ଚାତ୍ – ପଛରେ | ସତତମ୍ – ନିରନ୍ତର |
| ପୁନଃ—ପୁଣି | ସକୃତ୍ – ଥରେ |
| ପୁରା—ପୂର୍ବକାଳରେ | ସଦା—ସର୍ବଦା |
| ମୃଷା – ମିଥ୍ୟା | ଭୂୟଃ—ପୁଣି |
| ପ୍ରାୟେଣ, ପ୍ରାୟଃ—ସାଧାରଣତଃ | ସଦ୍ୟଃ – ତତ୍କ୍ଷଣାତ୍ |
| ଯୁଗପତ୍ – ଏକାବେଳକେ | ସର୍ବତ୍ର – ସବୁଠାରେ |
| ଶନୈଃ—ଆସ୍ତେ ଆସ୍ତେ | ସର୍ବଥା – ସବୁପ୍ରକାରରେ |
| ସ୍ୱୟମ୍ – ନିଜେ | ସର୍ବଦା—ସବୁବେଳେ |
| ଅଥ—ମଧ୍ୟ, ପ୍ରଶ୍ନାର୍ଥକ | ଏବ—ନିଶ୍ଚୟ |
| ବୃଥା—ଅକାରଣ | ଇବ — ପରି |
| ଇତସ୍ତତଃ – ଏଣେତେଣେ | ନୂନମ୍—ନିଶ୍ଚୟ |

ଚ, ବା, ତୁ, ହି, ଚେତ୍ ମଧ୍ୟାର୍ଥକ ଅପି, ଇବ, ଖଳୁ ଓ ନାମ ପ୍ରଭୃତି ଅବ୍ୟୟ ବାକ୍ୟର ଆରମ୍ଭରେ ବ୍ୟବହୃତ ହୁଏ ନାହିଁ ।

# ✳ ଉପସର୍ଗ

ପ୍ର, ପରା, ଅପ, ସମ୍, ନି, ଅଧି, ସୁ, ନିର୍, ଉତ୍, ପରି, ପ୍ରତି, ଅବ, ଅନୁ, ଦୁର୍, ବି, ଅଭି, ଅତି, ଅପି, ଉପ, ଆ—ଧାତୁପୂର୍ବରେ ବ୍ୟବହୃତ ହେଲେ ଏହି କୋଡ଼ିଏଟି ଅବ୍ୟୟକୁ ଉପସର୍ଗ କୁହାଯାଏ ।

## କର୍ମପ୍ରବଚନୀୟ

ଯେଉଁ ଉପସର୍ଗ ଧାତୁ ପୂର୍ବରେ ବ୍ୟବହୃତ ନ ହୋଇ ସ୍ୱତନ୍ତ୍ର ବ୍ୟବହୃତ ହୁଏ ଓ ସ୍ୱତନ୍ତ୍ରଭାବରେ ଅର୍ଥ ପ୍ରକାଶ କରେ, ତାହାକୁ କର୍ମପ୍ରବଚନୀୟ କୁହାଯାଏ । ଏହି କର୍ମପ୍ରବଚନୀୟ ଯୋଗରେ ଦ୍ୱିତୀୟା ବିଭକ୍ତି ହୁଏ, ଯଥା— ନରାଃ ଦେବାନ୍ ଅନୁ ( ମାନବମାନେ ଦେବତାମାନଙ୍କଠାରୁ ନିକୃଷ୍ଟ ) । ଏଠାରେ 'ଅନୁ' କର୍ମପ୍ରବଚନୀୟ ।

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର — ଆଜିକାଲି ବହୁତ ଲୋକ ନିଜର କାର୍ଯ୍ୟ ସିଦ୍ଧି ପାଇଁ ମିଛ କହୁଅଛନ୍ତି । ପିଲାମାନେ ! ନିଜର ସ୍ୱାସ୍ଥ୍ୟ ପ୍ରତି ବିଶେଷ ଯତ୍ନବାନ୍ ହୁଅ । ବିନା ଦୋଷରେ ତୁମେ କାହିଁକି ଏପରି ମନେ କରୁଅଛ ? ତେଣୁ ସାବିତ୍ରୀ ସ୍ୱାମୀଙ୍କର ଅନୁରୋଧରେ ବନର ବୃକ୍ଷଆଡ଼କୁ ଅନାଇ ମଧ୍ୟ କିଛି ଜାଣିପାରିଲେ ନାହିଁ । ସେମାନେ କାଲି ପୁରୀ ଯାଇଅଛନ୍ତି, କେବେ ଫେରିବେ ମତେ ଜଣା ନାହିଁ । (ମହ୍ୟଂ ନ ଜ୍ଞାୟତେ) । ଏହି ନଗରର ଉତ୍ତରରେ ରାଜାଙ୍କର ଗୋଟିଏ ସୁନ୍ଦର ବଗିଚା ଅଛି । ଏ ବର୍ଷ ଫୁଟବଲ ଖେଳରେ (କନ୍ଦୁକକ୍ରୀଡ଼ାୟାଂ) ବାଲେଶ୍ୱର ଜିଲ୍ଲା ସ୍କୁଲ ପ୍ରଥମସ୍ଥାନ ଅଧିକାର କରିଅଛି ।

୨ । ସଂଶୋଧନ କର — ସ ଆଗଚ୍ଛତି ତ୍ୱମ୍ ଆଗଚ୍ଛସି । ରାମଃ ମିଥ୍ୟଂ ବ୍ରୂତେ । ପୁରସ୍ତାଂ ଇଦଂ ଦେଶଃ ଉନ୍ନତମାସୀତ୍ । ଶ୍ୱଃ ତେ ଗୃହଂ ଅଗଚ୍ଛନ୍ । ନକ୍ତେ ଦଧିଂ ନ ଖାଦ ।

---

✳କେତେକଙ୍କ ମତରେ ଦୁସ୍ ଓ ନିସ୍ ମଧ୍ୟ ଉପସର୍ଗ । ଏଣୁ ଉପସର୍ଗ ସେମାନଙ୍କ ମତରେ ୨୨ଟି ।

୩ । ଶନୈଃ, ସାମ୍ପ୍ରତମ୍, ନକ୍ତମ୍, ପଶ୍ଚାତ୍, ମଧ୍ୟଃ, ନୂନମ୍, ନିତରାମ୍, କୃତେ ଓ କୁତ — ଏ ଗୁଡ଼ିକୁ ବ୍ୟବହାର କରି ବାକ୍ୟ ରଚନା କର ।

---

# କାରକ ଓ ବିଭକ୍ତି

## କାରକ

କ୍ରିୟାସହିତ ଯାହାର ସମ୍ବନ୍ଧ ଥାଏ, ତାହାକୁ କାରକ କହନ୍ତି । ଯଥା — ବାଳକାଃ ପ୍ରାନ୍ତରେ କ୍ରୀଡ଼ନ୍ତି । ଏଠାରେ "କଃ କ୍ରୀଡ଼ନ୍ତି"? ବାଳକାଃ । "କୁତ୍ର କ୍ରୀଡ଼ନ୍ତି ?" ପ୍ରାନ୍ତରେ । ଅତଏବ କ୍ରୀଡ଼ନ୍ତି କ୍ରିୟାସହିତ ବାଳକାଃ ଓ ପ୍ରାନ୍ତରେ ପଦର ସମ୍ପର୍କ ଥିବାରୁ ଏମାନେ ଗୋଟିଏ ଗୋଟିଏ କାରକ ।

'କ୍ରିୟାନ୍ୱୟିକାରକମ୍'

କ୍ରିୟା ସହିତ ସମ୍ବନ୍ଧ ନ ଥିବାରୁ ସମ୍ବନ୍ଧ ଓ ସମ୍ବୋଧନପଦ କାରକ ନୁହନ୍ତି । ଯଥା —

'ରାମସ୍ୟ' ପୁସ୍ତକଂ ପତତି' ଓ 'ହେ ପ୍ରଭୋ ! ଭବାନ୍ ରକ୍ଷତୁ' । ଏଠାରେ ପତତି କ୍ରିୟା ସହିତ 'ରାମସ୍ୟ'ର ଏବଂ ରକ୍ଷତୁ କ୍ରିୟା ସହିତ 'ହେ ପ୍ରଭୋ !'ର ସମ୍ପର୍କ ନ ଥିବାରୁ ଏମାନେ କାରକ ନୁହନ୍ତି । ରାମସ୍ୟ ସମ୍ବନ୍ଧ-ପଦ ଓ ପ୍ରଭୋ ! ସମ୍ବୋଧନପଦ ।

କାରକ ଛଅ ପ୍ରକାର । ଯଥା — କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ, ଅପାଦାନ ଓ ଅଧିକରଣ ।

## ବିଭକ୍ତି

ଯାହା ସଂଖ୍ୟା (ବଚନ), କାରକ ଓ ସମ୍ବନ୍ଧକୁ ବୁଝାଇ ଦିଏ, ତାହାକୁ ବିଭକ୍ତି କହନ୍ତି । ଯଥା —

ଗୋପାଳସ୍ୟ ପୁତ୍ରାଃ କ୍ରୀଡ଼ନ୍ତି । ଏଠାରେ ଗୋପାଳ ଶବ୍ଦରେ ଯୁକ୍ତ ହୋଇଥିବା ଙସ୍ (ସ୍ୟ) ଏକବଚନ ଏବଂ ଜନ୍ୟଜନକ ସମ୍ବନ୍ଧକୁ ବୁଝାଉ ଅଛି ଓ ପୁତ୍ର ଶବ୍ଦରେ ଯୁକ୍ତ ହୋଇଥିବା ଜସ୍ (ଅଃ) ବହୁବଚନ ଏବଂ କର୍ତ୍ତୃକାରକକୁ ବୁଝାଉଅଛି । ଏଣୁ ସି, ଔ, ଜସ୍ ପ୍ରଭୃତିକୁ ବିଭକ୍ତି କୁହାଯାଏ ।

'ସଂଖ୍ୟାକାରକସମ୍ବନ୍ଧବୋଧୟିତ୍ରୀ ବିଭକ୍ତିଃ'

ବିଭକ୍ତି ଦୁଇ ପ୍ରକାର । ଯଥା — କାରକବିଭକ୍ତି ଓ ଉପପଦବିଭକ୍ତି ।

୧ । କାରକବିଭକ୍ତି — କ୍ରିୟାଯୋଗରେ ହେଉଥିବା ବିଭକ୍ତିକୁ କାରକବିଭକ୍ତି କହନ୍ତି । ଯଥା —

ସ ପୁସ୍ତକଂ ପଠତି । ଏଠାରେ ପଠତି କ୍ରିୟାଯୋଗରେ ତଦ୍ ଶବ୍ଦର ପ୍ରଥମା ବିଭକ୍ତି ଓ ପୁସ୍ତକ ଶବ୍ଦର ଦ୍ୱିତୀୟା ବିଭକ୍ତି ହୋଇଅଛି । ଏଣୁ ଉକ୍ତ ପ୍ରଥମା ଓ ଦ୍ୱିତୀୟା କାରକବିଭକ୍ତି ।

୨ । ଉପପଦବିଭକ୍ତି — ଶବ୍ଦଯୋଗରେ ହେଉଥିବା ବିଭକ୍ତିକୁ ଉପପଦ-ବିଭକ୍ତି କହନ୍ତି । ଯଥା —

ପିତ୍ରା ସହ ପୁତ୍ରଃ ଗଚ୍ଛତି ଓ ଗ୍ରାମଂ ନିକଷା ଉଦ୍ୟାନମସ୍ତି ।
ଏଠାରେ ସହ ଶବ୍ଦ ଯୋଗରେ ପିତୃଶବ୍ଦର ତୃତୀୟା ଓ ନିକଷା ଶବ୍ଦଯୋଗରେ ଗ୍ରାମ ଶବ୍ଦର ଦ୍ୱିତୀୟା ବିଭକ୍ତି ହୋଇଅଛି । ଏଣୁ ଉକ୍ତ ତୃତୀୟା ଓ ଦ୍ୱିତୀୟା ଉପପଦବିଭକ୍ତି ।

---

## କର୍ତ୍ତୃକାରକ ଓ ପ୍ରଥମାବିଭକ୍ତି

୧ । ଯେ କ୍ରିୟାସମ୍ପାଦନ କରେ, ସେ କର୍ତ୍ତୃକାରକ । ଯଥା —

ଶିଶୁଃ ମାତରଂ ପଶ୍ୟତି । ଏଠାରେ ଶିଶୁ କ୍ରିୟାସମ୍ପାଦନ କରୁଥିବାରୁ କର୍ତ୍ତୃକାରକ । 'କ୍ରିୟାସମ୍ପାଦକଃ କର୍ତ୍ତା'

୨ । କ୍ରିୟାସମ୍ପାଦନରେ ଯେ ପ୍ରୟୋଜକ ସେ ମଧ୍ୟ କର୍ତ୍ତୃକାରକ । ଯଥା —

ମାତା ପୁତ୍ରମନ୍ନଂ ଭୋଜୟତି । ଏଠାରେ ମାତା ପ୍ରୟୋଜକ ହୋଇଥିବାରୁ କର୍ତ୍ତୃକାରକ । 'ପ୍ରୟୋଜକଶ୍ଚ'

୩ । * କର୍ତ୍ତୃବାଚ୍ୟରେ କର୍ତ୍ତୃକାରକରେ ପ୍ରଥମା ବିଭକ୍ତି ହୁଏ । ଯଥା —

ରାମଃ ବିଦ୍ୟାଳୟଂ ଗଚ୍ଛତି । ଶିଶୁଃ ମାର୍ଗେ କ୍ରୀଡ଼ତି ।

'ଉକ୍ତେ କର୍ତ୍ତରି ପ୍ରଥମା'

---

* ବାଚ୍ୟ ସାଧାରଣତଃ ତିନି ପ୍ରକାର । ଯଥା — କର୍ତ୍ତୃବାଚ୍ୟ, କର୍ମବାଚ୍ୟ ଓ ଭାବବାଚ୍ୟ ।

୪ । କର୍ତ୍ତୃବାଚ୍ୟରେ ପ୍ରୟୋଜକଠାରେ ପ୍ରଥମା ବିଭକ୍ତି ହୁଏ । ଯଥା —
ଗୁରୁଃ ଛାତ୍ରଂ ବେଦଂ ପାଠୟତି । 'ପ୍ରୟୋଜକେ ପ୍ରଥମା'

୫ । କର୍ମବାଚ୍ୟରେ କର୍ମକାରକରେ ପ୍ରଥମା ବିଭକ୍ତି ହୁଏ । ଯଥା —
ମୟା ଗ୍ରାମଃ ଗମ୍ୟତେ । ବାଳକେନ ଇତିହାସଃ ପଠ୍ୟତେ ।
'ଉକ୍ତେ କର୍ମଣି ପ୍ରଥମା'

୬ । ଇତି ପ୍ରଭୃତି ଅବ୍ୟୟଯୋଗରେ ପ୍ରଥମା ବିଭକ୍ତି ହୁଏ । ଯଥା —
ସ ରାମ ଇତି ବାଲକମଜାନାତ୍ । 'ଅବ୍ୟୟଯୋଗେ ପ୍ରଥମା'

୭ । ସମ୍ବୋଧନଠାରେ ପ୍ରଥମା ବିଭକ୍ତି ହୁଏ । ଯଥା —
ହେ ରାମ ! ଅୟି ମାତଃ ! 'ସମ୍ବୋଧନେ ପ୍ରଥମା'

## କର୍ମକାରକ ଓ ଦ୍ୱିତୀୟା ବିଭକ୍ତି

୧ । କର୍ତ୍ତାର ଅତିଶୟ ଇଚ୍ଛାରେ ଈପ୍ସିତକୁ କର୍ମକାରକ କୁହାଯାଏ । ଯଥା—
ଅହଂ ମିଷ୍ଟାନ୍ନଂ ଖାଦାମି । ଏଠାରେ କର୍ତ୍ତାର ଅତିଶୟ ଈପ୍ସିତ ମିଷ୍ଟାନ୍ନ କର୍ମକାରକ । 'କର୍ତ୍ତୁରୀପ୍ସିତତମଂ କର୍ମ'

୨ । କର୍ତ୍ତୃବାଚ୍ୟରେ କର୍ମକାରକରେ ଦ୍ୱିତୀୟା ବିଭକ୍ତି ହୁଏ । ଯଥା —
ବାଲକଃ ସାହିତ୍ୟଂ ପଠତି । ଅହଂ ଗୃହଂ ଗଚ୍ଛାମି ।
'କର୍ମଣି ଦ୍ୱିତୀୟା'

୩ । ଅଧି ଉପସର୍ଗଯୁକ୍ତ ଶୀ, ସ୍ଥା ଓ ଆସ୍ ଧାତୁର ଅଧିକରଣ କର୍ମସଂଜ୍ଞା ପ୍ରାପ୍ତ ହୁଏ । ଅର୍ଥାତ୍ ସପ୍ତମୀ ବିଭକ୍ତିସ୍ଥାନରେ ଦ୍ୱିତୀୟା ବିଭକ୍ତି ହୁଏ । ଯଥା —

ଅଧି+ଶୀ — ଶିଶୁଃ ଶଯ୍ୟାମ୍ ଅଧିଶେତେ । ଅଧି+ସ୍ଥା — ବ୍ରାହ୍ମଣଃ ମନ୍ଦିରମ୍ ଅଧିତିଷ୍ଠତି । ଅଧି+ଆସ୍ — ରାମଃ ଆସନମ୍ ଅଧ୍ୟାସ୍ତେ ।
'ଅଧିଶୀସ୍ଥାସାମାଧାରେ'

୪ । ଉପ, ଅନୁ, ଅଧି ଓ ଆ ଉପସର୍ଗଯୁକ୍ତ ବସ୍ ଧାତୁର ଅଧିକରଣ କର୍ମସଂଜ୍ଞା ପ୍ରାପ୍ତ ହୁଏ । ଅର୍ଥାତ୍ ସପ୍ତମୀ ବିଭକ୍ତିସ୍ଥାନରେ ଦ୍ୱିତୀୟା ବିଭକ୍ତି ହୁଏ । ଯଥା –

ମାଧବଃ ଗୃହମ୍ ଉପବସତି, ଅନୁବସତି, ଆବସତି ବା (ବାସ କରୁଅଛି) । 'ଉପାନ୍ୱଧ୍ୟାଙ୍ବସଃ'

୫ । ଉପବାସ ଅର୍ଥରେ ଉପ ଉପସର୍ଗଯୁକ୍ତ ବସ୍ ଧାତୁର ଅଧିକରଣ କର୍ମସଂଜ୍ଞା ପ୍ରାପ୍ତ ହୁଏ ନାହିଁ । ଯଥା –

ଦରିଦ୍ରଃ ଗୃହେ ଉପବସତି (ଉପବାସ ଅଛି) । 'ନାଭୁକ୍ତ୍ୟର୍ଥସ୍ୟ'

୬ । କ୍ରିୟାବିଶେଷଣଠାରେ ଦ୍ୱିତୀୟା ବିଭକ୍ତି ହୁଏ ଓ ଏହା କ୍ଳୀବଲିଙ୍ଗ ଏବଂ ଏକବଚନାନ୍ତ ହୁଏ । ଯଥା –

ବିହଗଃ ମଧୁରଂ କୂଜତି । ସ ସତ୍ୱରଂ ଧାବତି ।

'କ୍ରିୟାବିଶେଷଣେ କ୍ଳୀବୈକବଚନଞ୍ଚ'

୭ । ବ୍ୟାପ୍ତି ଅର୍ଥରେ କାଳ ଓ ମାର୍ଗବାଚକ ଶବ୍ଦରୁ ଉତ୍ତର ଦ୍ୱିତୀୟା ବିଭକ୍ତି ହୁଏ । ଯଥା –

ସ ମାସଂ (ମାସେ ବ୍ୟାପୀ) ଧାତୁରୂପଂ ପଠତି । କ୍ରୋଶଂ (କ୍ରୋଶେ ବ୍ୟାପୀ) ଗିରିଃ ବିଦ୍ୟତେ । 'ବ୍ୟାପ୍ତ୍ୟର୍ଥେ ଦ୍ୱିତୀୟା'

୮ । ନିମ୍ନଲିଖିତ ଅବ୍ୟୟଯୋଗରେ ଦ୍ୱିତୀୟା ବିଭକ୍ତି ହୁଏ । ଯଥା –

ପ୍ରତି – ଧନିନଂ ପ୍ରତି ଦୟାଂ କୁରୁ (ଦରିଦ୍ର ପ୍ରତି ଦୟା କର) ।

ଅନୁ (ପଛରେ) – ଶିକ୍ଷକମ୍ ଅନୁ ଛାତ୍ରାଃ ଗଚ୍ଛନ୍ତି । ମାମ୍ ଅନୁ ତ୍ୱଂ ଧାବସି ।

ନିକଷା (ନିକଟ) – ଗ୍ରାମଂ ନିକଷା ଉଦ୍ୟାନମସ୍ତି । ମାଂ ନିକଷା ତିଷ୍ଠ ।

ଅନ୍ତରା (ମଧ୍ୟରେ) – ରାମଂ ଶ୍ୟାମଂ ଚ ଅନ୍ତରା ତ୍ୱଂ ତିଷ୍ଠସି ।

ଧିକ୍ (ନିନ୍ଦାସୂଚକ) – କୃପଣଂ ଧିକ୍ । ଚୌରଂ ଧିକ୍ ।

ଅନ୍ତରେଣ (ବ୍ୟତୀତ)—ଗ୍ରାମମ୍ ଅନ୍ତରେଣ ବିଦ୍ୟା ନ ଲଭ୍ୟତେ ।

ଯାବତ୍ (ପର୍ଯ୍ୟନ୍ତ)— ନଦୀଂ ଯାବତ୍ ଗଚ୍ଛ । ସ ବନଂ ଯାବତ୍ ଯାତି ।

ଅଭିତଃ (ସମ୍ମୁଖରେ)—ମାମ୍ ଅଭିତଃ ସ ଧାବତି ।

ପରିତଃ (ଚାରିଆଡ଼େ) – ପିତରଂ ପରିତଃ ପୁତ୍ରାଃ କ୍ରୀଡ଼ନ୍ତି ।

ସର୍ବତଃ (ସବୁଆଡ଼େ)—ଦେଶଂ ସର୍ବତଃ ବନ୍ୟା ଅଭବତ୍ ।

ଉଭୟତଃ (ଦୁଇପାଖରେ)—ଗ୍ରାମମ୍ ଉଭୟତଃ ଆପଣାଃ ସନ୍ତି ।

ଉପର୍ଯ୍ୟୁପରି. ଅଧ୍ୟଧି (ଉପରକୁ ଉପରକୁ) ବୃକ୍ଷମ୍ ଉପର୍ଯ୍ୟୁପରି
ଅଧ୍ୟଧି ବା ଶାଖାଃ ସନ୍ତି ।

ଅଧୋଽଧଃ (ତଳକୁ ତଳକୁ) – ଭୂମିମ୍ ଅଧୋଽଧଃ ରତ୍ନାନି ବିଦ୍ୟନ୍ତେ ।

ସମୟା (ନିକଟ) – ଗୃହଂ ସମୟା ତେ କ୍ରୀଡ଼ନ୍ତି ।

ହା (ନିନ୍ଦାସୂଚକ) – ହା ନିଷ୍ଠୁରଂ ମାନବମ୍ ।

## ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର – ଓଡ଼ିଶାର ସବୁଆଡ଼େ ଏ ବର୍ଷ ବନ୍ୟା ହୋଇଥିଲା । ବର୍ତ୍ତମାନ ପ୍ରଧାନମନ୍ତ୍ରୀ ବିଲାତରେ (ପାଶ୍ଚାତ୍ୟମ୍) ବାସକରୁଅଛନ୍ତି । ସୀତା ଧୀରେ ଧୀରେ ଗୀତ ଗାଉଅଛି । କୁକୁର ନେଉଳ ଆଡ଼କୁ ଧାଉଁଅଛି । ତାଙ୍କ ଭାଇ ଚାରିବର୍ଷ ହେଲା ସୁଖରେ ଅଛନ୍ତି । ଆକାଶର ସବୁଆଡ଼େ କୃତ୍ରିମ ଗ୍ରହ ବୁଲୁଅଛି ।

୨ । ସଂଶୋଧନ କର – ମମ ପ୍ରତି ଦୟାଂ କୁରୁ । ବ୍ୟାଧଃ ମୃଗସ୍ୟ ଅନୁଧାବତି । ନଦ୍ୟାଃ ନିକଷା ଭ୍ରମ । ସମୁଦ୍ରସ୍ୟ ଯାବତ୍ ଯାହି । ଶିକ୍ଷକସ୍ୟ ପରିତଃ ଛାତ୍ରାଃ ପଠନ୍ତି । ନଦ୍ୟାଃ ଉଭୟତଃ ବୃକ୍ଷାଃ ସନ୍ତି ।

---

# କରଣକାରକ ଓ ତୃତୀୟା ବିଭକ୍ତି

୧ । କ୍ରିୟାସମ୍ପାଦନରେ ଯେ ପ୍ରଧାନ ସହାୟକ, ସେ କରଣକାରକ । ଯଥା —
ଅହଂ କର୍ଣ୍ଣାଭ୍ୟାଂ ଶୃଣୋମି । ଏଠାରେ କ୍ରିୟାସମ୍ପାଦନରେ ପ୍ରଧାନ ସହାୟକ କର୍ଣ୍ଣ କରଣକାରକ । 'ସାଧକତମଂ କରଣମ୍'

୨ । କରଣକାରକରେ ତୃତୀୟା ବିଭକ୍ତି ହୁଏ । ଯଥା: —
ସ ହସ୍ତେନ ଖାଦତି । ରାମଃ ଚକ୍ଷୁର୍ଭ୍ୟାଂ ପଶ୍ୟତି ।

'କରଣେ ତୃତୀୟା'

୩ । କର୍ମ ଓ ଭାବବାଚ୍ୟରେ କର୍ତ୍ତୃକାରକରେ ତୃତୀୟା ବିଭକ୍ତି ହୁଏ ।

'ଅନୁକ୍ତେ କର୍ତ୍ତରି ତୃତୀୟା'

କର୍ମବାଚ୍ୟ—ରାମେଣ ରାବଣଃ ହତଃ (ରାମ ରାବଣକୁ ମାରିଥିଲେ) ।
ଭାବବାଚ୍ୟ—ଶିଶୁନା କ୍ରୀଡ୍ୟତେ (ଶିଶୁ ଖେଳୁଅଛି) ।

୪ । (କ) ସହ,ସାର୍ଦ୍ଧମ୍,ସାକମ୍ ଓ ସମମ୍ ପ୍ରଭୃତି ଯୋଗରେ ଅପ୍ରଧାନଠାରେ ତୃତୀୟା ବିଭକ୍ତି ହୁଏ । ଯଥା: —
ପିତ୍ରା ସହ, ସାର୍ଦ୍ଧଂ, ସାକଂ, ସମଂ ବା (ସହିତ) ପୁତ୍ରଃ ଗଚ୍ଛତି (ପିତା ଅପ୍ରଧାନ) ।
(ଖ) ସହାଦି ଉହ୍ୟ ଥିଲେ ମଧ୍ୟ ତୃତୀୟା ବିଭକ୍ତି ହୁଏ । ଯଥା: —
ପିତ୍ରା ପୁତ୍ରଃ ଗଚ୍ଛତି । 'ସହାର୍ଥେ ତୃତୀୟା'

୫ । ଊନାର୍ଥ (ଊନ, ହୀନ, ଶୂନ୍ୟ, ରହିତ) ବାରଣାର୍ଥ (କିମ୍, ଅଲମ୍) ଓ ପ୍ରୟୋଜନାର୍ଥ(ପ୍ରୟୋଜନ, ଅର୍ଥ, କାର୍ଯ୍ୟ, ଗୁଣ, ଫଳ)ଶବ୍ଦଯୋଗରେ ତୃତୀୟା ବିଭକ୍ତି ହୁଏ । 'ଊନବାରଣପ୍ରୟୋଜନାର୍ଥୈଶ୍ଚ'
ଊନ (ଊଣା)—ଏକେନ ଊନା ବିଂଶତିଃ ବାଳକାଃ ।
ହୀନ (ରହିତ) — ଜ୍ଞାନେନ ହୀନଃ ଜନଃ ଗଚ୍ଛତି ।
ଅଲମ୍ (ବାରଣାର୍ଥ) — ବିବାଦେନ ଅଲମ୍ (ବିବାଦ କର ନାହିଁ) ।
ପ୍ରୟୋଜନ — ମମ ଧନେନ ପ୍ରୟୋଜନମ୍ ଅସ୍ତି ।

ଅର୍ଥ (ପ୍ରୟୋଜନ) – ମୂର୍ଖପୁତ୍ରେଣ କୋଽର୍ଥଃ (ମୂର୍ଖପୁତ୍ରରେ କି ଫଳ) ?
ଜନ୍ମ(କାରଣାର୍ଥକ) – କାଣେନ ଚକ୍ଷୁଷା କିମ୍(କଣାଚକ୍ଷୁ କିମ୍ପ୍ରୟୋଜନ) ।

୬ । କାର୍ଯ୍ୟସମାପ୍ତି ବୁଝାଇଲେ କାଳ ଓ ମାର୍ଗବାଚକ ଶବ୍ଦରୁ ଉତ୍ତର ବ୍ୟାପ୍ତି ଅର୍ଥରେ ତୃତୀୟା ବିଭକ୍ତି ହୁଏ । ଯଥା: –

ସ ମାସେନ ପୁରାଣମପଠତ୍ (ପଢ଼ିସାରିଅଛି) । କ୍ରୋଶେନ ସଙ୍ଗୀତମଗାୟତ୍ (ଗାଇସାରିଅଛି) । 'ଅପବର୍ଗେ ତୃତୀୟା'

୭ । ପ୍ରକୃତି ପ୍ରଭୃତି ଶବ୍ଦରୁ ଉତ୍ତର ତୃତୀୟା ବିଭକ୍ତି ହୁଏ ।

'ପ୍ରକୃତ୍ୟାଦିଭ୍ୟଃ ତୃତୀୟା'

ପ୍ରକୃତି –ଦୁଗ୍ଧଂ ପ୍ରକୃତ୍ୟା ମଧୁରମ୍ ( ଦୁଧ ପ୍ରକୃତିରେ ମିଠା ) ।
ସ୍ୱଭାବ– ମଧୁଃ ସ୍ୱଭାବେନ ସରଳଃ ( ମଧୁ ସ୍ୱଭାବରେ ସରଳ ) ।.
ଆକୃତି – ଗୋପାଳଃ ଆକୃତ୍ୟା ସୁନ୍ଦରଃ(ଗୋପାଳ ଆକୃତିରେ ସୁନ୍ଦର) ।
ନାମନ୍ – ତ୍ୱଂ ନାମ୍ନା ରାମଃ (ତୁମ ନାମ ରାମ) ।
ଜାତି—ସ ଜାତ୍ୟା ବ୍ରାହ୍ମଣଃ (ସେ ଜାତିରେ ବ୍ରାହ୍ମଣ) ।
ସୁଖ—ଶିଶୁଃ ସୁଖେନ କ୍ରୀଡ଼ତି (ଶିଶୁ ସୁଖରେ ଖେଳୁଅଛି ) ।

୮ । ହେତୁ ଅର୍ଥରେ ତୃତୀୟା ଓ ପଞ୍ଚମୀବିଭକ୍ତି ହୁଏ । ଯଥା:—

ସ ଦୁଃଖେନ ଦୁଃଖାତ୍ ବା (ଦୁଃଖ ହେତୁରୁ)କ୍ରନ୍ଦତି । ରାମଃ ଶ୍ରମେଣ ଶ୍ରମାତ୍ ବା କ୍ଳାନ୍ତଃ ଭବତି । 'ହେତୌ ତୃତୀୟାପଞ୍ଚମ୍ୟୌ'

୯ । ସ୍ତ୍ରୀଲିଙ୍ଗ ଶବ୍ଦ ହେତୁ ଅର୍ଥରେ କେବଳ ତୃତୀୟା ବିଭକ୍ତ୍ୟନ୍ତ ହୁଏ । ଯଥା:— ଦରିଦ୍ରଃ କ୍ଷୁଧୟା କ୍ରନ୍ଦତି । ଅହଂ ଦୟୟା ଦଦାମି ।

୧୦ । ମୂଲ୍ୟବାଚକ ଶବ୍ଦ ତୃତୀୟା ବିଭକ୍ତ୍ୟନ୍ତ ହୁଏ । ଯଥା:—
ତ୍ୱଂ ପଞ୍ଚଭିଃ ରୂପ୍ୟକୈଃ (ପାଞ୍ଚଟଙ୍କାରେ) କନ୍ଦୁକଂ କ୍ରୀତବାନ୍ ।

୧୧ । ଯେଉଁ ମାର୍ଗରେ ଗମନ କରାଯାଏ, ସେହି ମାର୍ଗବାଚକ ଶବ୍ଦ ତୃତୀୟା ବିଭକ୍ତ୍ୟନ୍ତ ହୁଏ । ଯଥା: –
ରାମଃ ଅନେନ ମାର୍ଗେଣ ଅଗଚ୍ଛତ୍

୧୨ । ଅଙ୍ଗୀର ବିକୃତଅଙ୍ଗବାଚକଶବ୍ଦରୁ ଉତ୍ତର ତୃତୀୟା ବିଭକ୍ତି ହୁଏ । ଯଥା:—
ଚକ୍ଷୁଷା କାଣଃ (କଣା) । ପାଦେନ ଖଞ୍ଜଃ (ଖୋଣ୍ଟା) ।

'ଅଙ୍ଗବିକାରେ ତୃତୀୟା'

୧୩ । କୌଣସି ବ୍ୟକ୍ତି ସୂଚିତ ହେଉଥିବା ଚିହ୍ନବାଚକଶବ୍ଦରୁ ଉତ୍ତର ତୃତୀୟା ବିଭକ୍ତି ହୁଏ । ଯଥା:—

ଜଟାଭିଃ ତାପସଃ ଗଚ୍ଛତି । ଉପବୀତେନ ବ୍ରାହ୍ମଣଃ ।

'ଉପଲକ୍ଷଣେ ତୃତୀୟା'

୧୪ । ପୂର୍ବ ଓ ଅବରପ୍ରଭୃତି ଶବ୍ଦଯୋଗରେ ତୃତୀୟା ବିଭକ୍ତି ହୁଏ । ଯଥା:—
ରଘୁଃ ମାସେନ ପୂର୍ବଃ (ମାସେ ବଡ଼) । ବର୍ଷେଣ ଅବରଃ (ବର୍ଷେ ସାନ) ।

ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:—ମୁଁ ବାପାଙ୍କ ସହ କାଶୀ ଯାଇଥିଲି । ହୀରାକୁଦବନ୍ଧ ପାଞ୍ଚବର୍ଷରେ ତିଆରି ସରିଲା । ଜ୍ଞାନଶୂନ୍ୟ ଲୋକ ପଶୁ ସହ ସମାନ । ଶ୍ରୀଧର ନାମରେ ଜଣେ ପିଲା ଭଲ ମାରୁଅଛି । ଛାତ୍ରମାନେ ବର୍ଷାଦିନେ ବଲ୍ ଖେଳନ୍ତି । ପଚାଶ ଟଙ୍କାରେ ଦୁଇଖଣ୍ଡ ଲୁଗା କିଣିଥିଲି ।

୨ । ଅଲମ୍, ସ୍ୱେଚ୍ଛୟା, କ୍ଷୁଧୟା, ଗୋତ୍ରେଣ, ଅର୍ଥଃ, ସାର୍ଦ୍ଧମ୍, ଊନଃ, କମ୍ ଓ ଶିରସା -- ଏହି ପଦଗୁଡ଼ିକୁ ବାକ୍ୟରେ ବ୍ୟବହାର କର ।

## ସମ୍ପ୍ରଦାନକାରକ ଓ ଚତୁର୍ଥୀ ବିଭକ୍ତି

୧ । ଯେଉଁ ଦାନରେ ଅଧିକାରତ୍ୟାଗ କରାଯାଏ, ସେହି ଦାନର ଗ୍ରହୀତା ସମ୍ପ୍ରଦାନକାରକ । ଯଥା:—

ଧନୀ ଦରିଦ୍ରାୟ ଧନଂ ଦାସ୍ୟତି । ଏଠାରେ ଦାତାର ଅଧିକାରତ୍ୟାଗ ବୁଝାଉଥିବାରୁ ଗ୍ରହୀତା ଦରିଦ୍ର ସମ୍ପ୍ରଦାନକାରକ ।

୨ । ସମ୍ପ୍ରଦାନକାରକରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା:—
ରାଜା ବିପ୍ରାୟ ଗାଂ ଦଦାତି । 'ସମ୍ପ୍ରଦାନେ ଚତୁର୍ଥୀ'

*ମାତ୍ର 'ଧୋବାକୁ ଲୁଗା ଦିଅ' ଏଠାରେ ଅଧିକାର ତ୍ୟାଗ ବୁଝାଉ ନ ଥିବାରୁ ସମ୍ପ୍ରଦାନେ ଚତୁର୍ଥୀ ବିଭକ୍ତି ନ ହୋଇ ସମ୍ବନ୍ଧସାମାନ୍ୟେ ଷଷ୍ଠୀ ବିଭକ୍ତି ହେବ । ଯଥା: – ରଜକସ୍ୟ ବସ୍ତ୍ରଂ ଦେହି ।

୩ । ରୁଚ୍ୟର୍ଥଧାତୁର ପ୍ରୟୋଗରେ ଯେ ପ୍ରୀତ ହୁଏ, ସେ ସମ୍ପ୍ରଦାନକାରକ । ଅର୍ଥାତ୍ ଯାହାକୁ ରୁଚେ ତାହାଠାରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା: –

ବାଳିକାଯୈ କ୍ରୀଡ଼ା ରୋଚତେ (ଭଲଲାଗେ) । ଶିଶୁଭ୍ୟଃ ମିଷ୍ଟାନ୍ନଂ ସ୍ୱଦତେ । 'ରୁଚ୍ୟର୍ଥାନାଂ ପ୍ରୀୟମାଣଃ'

୪ । ସ୍ପୃହ (ସ୍ପୃହ୍ + ଣିଚ୍) ଧାତୁର ପ୍ରୟୋଗରେ ଈପ୍ସିତ ବସ୍ତୁ ସମ୍ପ୍ରଦାନକାରକ । ଅର୍ଥାତ୍ ଯେଉଁ ପଦାର୍ଥକୁ ସ୍ପୃହା କରାଯାଏ, ତାହାଠାରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା: –

କୃପଣାଃ ଧନାୟ ସ୍ପୃହୟନ୍ତି । ବାଳକା ପୁଷ୍ପେଭ୍ୟଃ ଅସ୍ପୃହୟନ୍ । 'ସ୍ପୃହେରୀପ୍ସିତଃ'

କିନ୍ତୁ ଈପ୍ସିତତମ ହେଲେ ଚତୁର୍ଥୀ ବିଭକ୍ତି ନ ହୋଇ ଦ୍ୱିତୀୟା ବିଭକ୍ତି ହୁଏ । ଯଥା: –

ସ୍ତ୍ରିୟଃ ଭୂଷଣଂ ସ୍ପୃହୟନ୍ତି । (ଭୂଷଣ ସ୍ତ୍ରୀମାନଙ୍କର ଈପ୍ସିତତମ ।)

୫ । ଧାରି(ଧୃ+ଣିଚ୍)ଧାତୁର ପ୍ରୟୋଗରେ ଋଣଦାତା(ମହାଜନ) ସମ୍ପ୍ରଦାନକାରକ । ଅର୍ଥାତ୍ ଋଣଦାତା ଚତୁର୍ଥୀ ବିଭକ୍ତ୍ୟନ୍ତ ହୁଏ । ଯଥା: –

ଦରିଦ୍ରଃ ଧନିକାୟ ଧାନ୍ୟଂ ଧାରୟତି (କରଜ କରୁଅଛି) । ଅହଂ ତୁଭ୍ୟଂ ମୁଦ୍ରାଃ ଅଧାରୟମ୍ । 'ଧାରେରୁତ୍ତମର୍ଣ୍ଣଃ'

---

*'ସମ୍ୟକ୍ ପ୍ରଦୀୟତେ ଅସ୍ମୈ ଇତି ସମ୍ପ୍ରଦାନମ୍' । ଅପୁନର୍ଗ୍ରହଣାୟ ସ୍ୱତ୍ୱନିବୃତ୍ତିପୂର୍ବକଂ ଯତ୍ ପରସ୍ୱତ୍ୱୋତ୍ପାଦନଂ ତଦ୍ଦାନମ୍ । ଅତଏବ ରଜକସ୍ୟ ବସ୍ତ୍ରଂ ଦଦାତି ଇତ୍ୟାଦୌ ନ ଚତୁର୍ଥୀ । ରଜକସ୍ୟ ସମ୍ବନ୍ଧେ ଷଷ୍ଠୀ । ( ସୁବୋଧିନୀ)

୬ । କୌଣସି କାର୍ଯ୍ୟ ଯାହା ଉଦ୍ଦେଶ୍ୟରେ ସମ୍ପାଦିତ ହୁଏ, ସେ ସମ୍ପ୍ରଦାନ-କାରକ । ଅର୍ଥାତ୍ ତାହାଠାରେ ଚତୁର୍ଥୀ ବିଭକ୍ତି ହୁଏ । ଏହାକୁ କ୍ରିୟାଗ୍ରହଣେ ଚତୁର୍ଥୀ କହନ୍ତି । ଯଥା:—

ପିତା ପୁତ୍ରାୟ କ୍ରୀଡ଼ନକଂ ଦର୍ଶୟତି । ସଦ୍ବଶେଷଭୂକାମ୍ ଅଗ୍ନୌ ବଧେହ୍ନ । 'କ୍ରିୟୟା ଯମଭିପ୍ରେତି'

୭ । କ୍ରୁଧାଦି ଧାତୁଯୋଗରେ ଯାହା ପ୍ରତି କ୍ରୋଧାଦି କରାଯାଏ, ସେ ସମ୍ପ୍ରଦାନ କାରକ । ଅର୍ଥାତ୍ ସେ ଚତୁର୍ଥୀ ବିଭକ୍ତ୍ୟନ୍ତ ହୁଏ ।

'କ୍ରୋଧଦ୍ରୋହେର୍ଷାସୂୟାର୍ଥାନାଂ ଯଂ ପ୍ରତି କୋପଃ ।ଧାଦୟଃ'

କ୍ରୁଧ୍ — ରାମଃ ଗୋବିନ୍ଦାୟ କ୍ରୁଧ୍ୟତି (ରାଗୁଅଛି) ।

ଦ୍ରୁହ୍ — ଦଶଦ୍ୱାଃ ଧନିଭ୍ୟଃ ଦ୍ରୁହ୍ୟନ୍ତି (ଦ୍ରୋହ କରନ୍ତି) ।

ଈର୍ଷ୍ୟ — କଥଂ ବୃଥା ସାଧବେ ଈର୍ଷ୍ୟସି (ଈର୍ଷା କରୁଅଛ) ।

ଅସୂୟ — ପ୍ରତିବେଶିନେ ମା ଅସୂୟ (ଅସୂୟା କର ନାହିଁ) ।

କିନ୍ତୁ କ୍ରୁଧ୍ ଓ ଦ୍ରୁହ୍ ଧାତୁ ଉପସର୍ଗଯୁକ୍ତ ହେଲେ ସମ୍ପ୍ରଦାନ କର୍ମ-ସଞ୍ଜ୍ଞା ପ୍ରାପ୍ତ ହୁଏ । ଅର୍ଥାତ୍ ଚତୁର୍ଥୀ ବିଭକ୍ତି ନ ହୋଇ ଦ୍ୱିତୀୟା ବିଭକ୍ତି ହୁଏ । ଯଥା:—

ପିତା ପୁତ୍ରମ୍ ଅଭିକ୍ରୁଧ୍ୟତି । ସ ମାମ୍ ଅଭିଦ୍ରୁହ୍ୟତି ।

'କ୍ରୁଧଦ୍ରୁହୋରୁପସୃଷ୍ଟୟୋଃ ସମ୍ପ୍ରଦାନେ'

୮ । ନିମିତ୍ତାର୍ଥରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା:—

ସ୍ୱର୍ଣ୍ଣକାରଃ ହାରାୟ ସୁବର୍ଣ୍ଣଂ ନୟତି । ଧର୍ମାୟ ପତ୍ନୀଂ ଗୃହ୍ଣାତି ।

'ତାଦର୍ଥ୍ୟେ ଚତୁର୍ଥୀ'

୯ । ତୁମ୍ ପ୍ରତ୍ୟୟାନ୍ତ ପଦ ଉହ୍ୟ ଥିଲେ, ତାହାର କର୍ମଠାରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା:—

ରମଣୀ ପୁଷ୍ପାୟ (ପୁଷ୍ପମାନେତୁମ୍) ଉଦ୍ୟାନଂ ଗଚ୍ଛତି ।

'କ୍ରିୟାର୍ଥୋପପଦସ୍ୟ କର୍ମଣି ସ୍ଥାନିନଃ'

୧୦ । ତୁମ୍ ପ୍ରତ୍ୟୟାନ୍ତ ପଦର ପରବର୍ତ୍ତୀରେ ବ୍ୟବହୃତ ହେଉଥିବା ଭାବବାଚ୍ୟ-ନିଷ୍ପନ୍ନ କୃତ୍ ପ୍ରତ୍ୟୟାନ୍ତ ପଦ ଚତୁର୍ଥୀ ବିଭକ୍ତ୍ୟନ୍ତ ହୁଏ । ଯଥା: —

ପାଚକଃ ପାକାୟ (ପକ୍ତୁଂ) ଗଚ୍ଛତି 'ପଚ୍+ଭାବେ ଘଞ୍' । ବ୍ରାହ୍ମଣଃ ସ୍ନାନାୟ (ସ୍ନାତୁଂ) ନଦୀଂ ଗଚ୍ଛତି 'ସ୍ନା+ଭାବେ ଲ୍ୟୁଟ୍' ।

'ତୁମର୍ଥାଚ୍ଚ ଭାବବଚନାତ୍'

୧୧ । କଥନାର୍ଥ ଓ ପ୍ରେରଣାର୍ଥ ଧାତୁଯୋଗରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା: —

କଥନାର୍ଥ — ଛାତ୍ରଃ ଶିକ୍ଷକାୟ ନିବେଦୟତି (ଜଣାଉଅଛି) ।

ପ୍ରେରଣାର୍ଥ — ତ୍ୱଂ ତସ୍ମୈ ଭୃତ୍ୟଂ ପ୍ରେରୟ (ପଠାଅ) ।

'କଥନାର୍ଥପ୍ରେରଣାର୍ଥେଷୁ'

୧୨ । ନମଃ, ସ୍ୱସ୍ତି ଓ ସ୍ୱାହା ପ୍ରଭୃତି ଅବ୍ୟୟଯୋଗରେ ଚତୁର୍ଥୀ ବିଭକ୍ତି ହୁଏ ।

'ନମଃ-ସ୍ୱସ୍ତି-ସ୍ୱାହା-ସ୍ୱଧାଲଂବଷଡ୍ଯୋଗାଚ୍ଚ'

ନମଃ (ନମସ୍କାର) — ଗୁରବେ ନମଃ ।

ସ୍ୱସ୍ତି (ମଙ୍ଗଳ) — ରାଜ୍ଞେ ସ୍ୱସ୍ତି ଭବତୁ ।

ସ୍ୱାହା, ସ୍ୱଧା, ଓ ବଷଟ୍ (ସମର୍ପଣସୂଚକ) — ଅଗ୍ନୟେ ସ୍ୱାହା ।

ପିତୃଭ୍ୟଃ ସ୍ୱଧା । ଇନ୍ଦ୍ରାୟ ବଷଟ୍ ।

ଅଲମ୍ (ସମର୍ଥ) — ଭୀମଃ ଦୁଃଶାସନାୟ ଅଲମ୍ ।

୧୩ । ହିତ ଓ ସୁଖ ଶବ୍ଦ ଯୋଗରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା: —

ହିତ — ଶିଶୁଭ୍ୟଃ ହିତଂ ଭବତୁ ।

ସୁଖ — ମାତ୍ରେ ସୁଖମସ୍ତୁ ।

୧୪ । ଉପପଦବିଭକ୍ତିଠାରୁ କାରକ ବିଭକ୍ତି ବଳବତୀ । ଏଣୁ ନମସ୍+କୃ ଯୋଗରେ ଚତୁର୍ଥୀ ବିଭକ୍ତି ନ ହୋଇ ଦ୍ୱିତୀୟା ବିଭକ୍ତି ହୁଏ । ଯଥା: —

ଛାତ୍ରଃ ଗୁରୁଂ ନମସ୍କରୋତି । ଏଠାରେ ନମସ୍ ଶବ୍ଦ ଯୋଗରେ ହେଉଥିବା ଚତୁର୍ଥୀ ଉପପଦବିଭକ୍ତି ଏବଂ କରୋତି କ୍ରିୟା ଯୋଗରେ ହେଉଥିବା ଦ୍ୱିତୀୟା କାରକବିଭକ୍ତି । ଏଣୁ ଦ୍ୱିତୀୟା ବିଭକ୍ତି ହେଲା ।

'ଉପପଦବିଭକ୍ତେଃ କାରକବିଭକ୍ତିଃ ବଲୀୟସୀ'

୧୫ । କୃପ, କଳ୍, ଭୂ ଓ ସମ୍+ପଦ୍ ଧାତୁର ପ୍ରୟୋଗରେ ସମ୍ପଦ୍ୟମାନ ଚତୁର୍ଥୀ ବିଭକ୍ତ୍ୟନ୍ତ ହୁଏ । ଯଥା:—

ଭକ୍ତିଃ ଜ୍ଞାନାୟ କଳ୍ପତେ । ମେଘସ୍ପୃତକାରକଳହଃ ବାନାରଣୀ ଷସ୍ତ୍ୱାୟ ଭବିଷ୍ୟତି । ବିଦ୍ୟା ସମ୍ମାନାୟ ଜାୟତେ ଇତ୍ୟାଦି ।

'ସମ୍ପଦ୍ୟମାନାତ୍ କୃପ୍ୟାଦେଃ'

୧୬ । ପ୍ରତି+ଶ୍ରୁ ଓ ଆ+ଶ୍ରୁ ଧାତୁର ପ୍ରୟୋଗରେ ପ୍ରବର୍ତ୍ତିକଠାରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା:—

ବିପ୍ରଃ ଗୋବିନ୍ଦାୟ ପୁସ୍ତକଂ ପ୍ରତିଶୃଣୋତି ଆଶୃଣୋତି ବା (ଗୋବିନ୍ଦ ପ୍ରବର୍ତ୍ତିକ) । 'ପ୍ରତ୍ୟାଙ୍‌ଭ୍ୟାଂ ଶ୍ରୁବଃ ପ୍ରବର୍ତ୍ତିକେ'

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:—ମତେ ବର୍ତ୍ତମାନ ବୁଲିବା ଭଲ ଲାଗୁ ନାହିଁ । ଧନୀମାନେ ଗରିବମାନଙ୍କ ଉପରେ କୃଥା ରାଗନ୍ତି । ଶୋଷିଲୁ ପାଣି ଓ ଭୋକିଲାକୁ ଭାତ ଦିଅ । ଏବର୍ଷ ମୁଁ ପଡ଼ୋଶୀଠାରୁ ପଚାଶ ଟଙ୍କା ଉଧାର କରିଅଛି । ସମସ୍ତେ ଠାକୁଆ ଉପରେ ରାଗନ୍ତି ।

୨ । ସଂଶୋଧନ କର:—ଇଦଂ ତ୍ୱାଂ ରୋଚଯେ । ରାକ୍ଷସାଃ ଦେବାନ୍ ଦ୍ରୁହ୍ୟନ୍ତି । ଅସ୍ମଂ ତସ୍ମାତ୍ ମୁଦ୍ରାଃ ଧାରୟତି । ପୁଷ୍ପାତ୍ ଉପବନଂ ଗଚ୍ଛତି

---

## ଅପାଦାନକାରକ ଓ ପଞ୍ଚମୀ ବିଭକ୍ତି

୧ । ଯାହାଠାରୁ ବିଶ୍ଳେଷ ବା ବିଚ୍ଛେଦ ଘଟେ, ସେ ଅପାଦାନକାରକ । ଯଥା:—

ଆକାଶାତ୍ ଜଳାନି ଅପତନ୍ । ଏଠାରେ ଆକାଶରୁ ଜଳର ବିଚ୍ଛେଦ ଘଟିଥିବାରୁ ଆକାଶ ଅପାଦାନକାରକ । 'ଯତୋବିଶ୍ଳେଷୋଽପାଦାନମ୍'

୨ । ଅପାଦାନକାରକରେ ପଞ୍ଚମୀ ବିଭକ୍ତିହୁଏ । ଯଥା:—

ବୃକ୍ଷାତ୍ ପତ୍ରଂ ପତତି । ଅଶ୍ୱାତ୍ ଆରୋହୀ ଅପତତ୍ ।

'ଅପାଦାନେ ପଞ୍ଚମୀ'

୩ । ଭୟାର୍ଥ ଓ ରକ୍ଷଣାର୍ଥ ଧାତୁର ପ୍ରୟୋଗରେ ଭୟର କାରଣ ଅପାଦାନ-କାରକ । ଅର୍ଥାତ୍ ଭୟର କାରଣଠାରେ ପଞ୍ଚମୀବିଭକ୍ତି ହୁଏ । ଯଥା: –

ବାଳକଃ ସର୍ପାତ୍ ବିଭେତି । ଈଶ୍ୱରଃ ମାଂ ବିପଦଃ ରକ୍ଷତି । ଭୟାତ୍ ତ୍ରାୟସ୍ୱ । 'ଭୀତ୍ରାର୍ଥାନାଂ ଭୟହେତୁଃ'

୪ । ଯାହାକୁ ଲୁଚିବାକୁ ହୁଏ, ସେ ଅପାଦାନ । ଅର୍ଥାତ୍ ତାହାଠାରେ ପଞ୍ଚମୀ ବିଭକ୍ତି ହୁଏ । ଯଥା:—

ପୁତ୍ରଃ ପିତୁଃ ନିଲୀୟତେ (ଲୁଚିଅଛି) 'ଯସ୍ୟାଦର୍ଶନମିଚ୍ଛତି'

୫ । ଯାହାକୁ ଘୃଣା କରାଯାଏ ସେ ଅପାଦାନ । ଅର୍ଥାତ୍ ତାହାଠାରେ ପଞ୍ଚମୀ ବିଭକ୍ତି ହୁଏ । ଯଥା: –

ହରିଶ୍ଚନ୍ଦ୍ରଃ ଚଣ୍ଡାଳାତ୍ ଜୁଗୁପ୍ସତେ ନ (ଘୃଣା କରିଥିଲେ) । ଅହଂ ପାପାତ୍ ଜୁଗୁପ୍ସେ ବିରମେ ବା । 'ଜୁଗୁପ୍ସାର୍ଥାନାଂ ଯତୋ ଜୁଗୁପ୍ସା'

୬ । ଯାହାକୁ ଲଜ୍ଜା କରାଯାଏ, ସେ ଅପାଦାନ । ଅର୍ଥାତ୍ ତାହାଠାରେ ପଞ୍ଚମୀ ବିଭକ୍ତି ହୁଏ । ଯଥା: –

ତ୍ୱଂ ଶିକ୍ଷକାତ୍ କଥଂ ଲଜ୍ଜସେ ? ବଧୂଃ ଶ୍ୱଶୁରାତ୍ ଲଜ୍ଜତେ ।

'ତ୍ରପାର୍ଥାନାଂ ଯତସ୍ତ୍ରପା'

୭ । 'ଲ୍ୟପ୍ ପ୍ରତ୍ୟୟାନ୍ତ ପଦ ଲୋପ ହେଲେ ତାହାର କର୍ମ ଓ ଅଧିକରଣରେ ପଞ୍ଚମୀ ବିଭକ୍ତି ହୁଏ ।' ଲ୍ୟବ୍‌ଲୋପେ କର୍ମଣ୍ୟଧିକରଣେ ଚ'

କର୍ମ—ସ ବୃକ୍ଷାତ୍ (ବୃକ୍ଷମାରୁହ୍ୟ) ମାଂ ପଶ୍ୟତି ।

ଅଧିକରଣ—ହରିଣୀକଃ ବିବରାଭ୍ୟନ୍ତରାତ୍ (ବିବରାଭ୍ୟନ୍ତରେ ଉପବିଶ୍ୟ) ଆହ ।

୮ । ଉତ୍କର୍ଷ ବୁଝାଇଲେ ନିକୃଷ୍ଟରୁ ଉତ୍ତର ପଞ୍ଚମୀ ବିଭକ୍ତି ହୁଏ । ଯଥା: –

ରାମଃ ଶ୍ୟାମାତ୍ ବଳୀୟାନ୍ । ସ ଭୃତ୍ୟ ବୁଦ୍ଧି ମନ୍ତରଃ ମୂଢତରଃ ବା ।

'ନିକୃଷ୍ଟାଦେବୋତ୍କର୍ଷେ'

୯ । ନିମ୍ନଲିଖିତ ପଦଯୋଗରେ ପଞ୍ଚମୀ ବିଭକ୍ତି ହୁଏ ।

ପୂର୍ବମ୍ ଓ ପ୍ରାକ୍ (ପୂର୍ବରୁ ଓ ପୂର୍ବରେ)—ଶୟନାତ୍ ପୂର୍ବଂ (ପ୍ରାକ୍) ଜଳଂ ପିବ ।

ବହିଃ (ବାହାରେ) — ଗୃହାତ୍ ବହିଃ ଉଦ୍ୟାନମସ୍ତି ।

ପ୍ରଭୃତି ଓ ଆରଭ୍ୟ (ଆରମ୍ଭକରି) - ବାଲ୍ୟାତ୍ ପ୍ରଭୃତି (ଆରଭ୍ୟ) । ସ ଦରିଦ୍ରଃ ।

ଉତ୍ତରା (ଉତ୍ତରରେ) — ଭାରତାତ୍ ଉତ୍ତରା ହିମାଳୟଃ ।

ଦକ୍ଷିଣାହି — (ଦକ୍ଷିଣରେ) — ଗୃହାତ୍ ଦକ୍ଷିଣାହି ଦେବାଳୟଃ ।

ଆରାତ୍ (ଦୂରରେ ବା ନିକଟରେ) ଉଦ୍ୟାନାତ୍ ଆରାତ୍ ନଦୀ ପ୍ରବହତି ।

ପୃଥ (ପୃଥକ୍)—ପୁତ୍ରଃ ପିତୁଃ ପୃଥ ।

ପରମ୍ (ପରେ) — ପଠନାତ୍ ପରଂ କ୍ରୀଡ଼ ।

ଅନନ୍ତରମ୍ (ପରେ) — ଭୋଜନାତ୍ ଅନନ୍ତରଂ ନ ଧାବ ।

୧୦ । କାଳ ଓ ମାର୍ଗର ପରିମାଣ ବୁଝାଉଥିଲେ ଅବଧିବୋଧକ ଶବ୍ଦ ପଞ୍ଚମୀ ବିଭକ୍ତ୍ୟନ୍ତ ହୁଏ । ଯଥା: —

କଟକାତ୍ ପୁରୀ ପଞ୍ଚବିଂଶତିଃ କ୍ରୋଶାଃ । ଗମନାତ୍ ତୃତୀୟେ ମାସେ ଆଗତଃ । 'କାଳାଧ୍ୱନୋରବଧେଃ'

୧୧ । ଉତ୍ପତ୍ତିର କାରଣବୋଧକ ପଦ ପଞ୍ଚମୀ ବିଭକ୍ତ୍ୟନ୍ତ ହୁଏ । ଯଥା:—

ଦୁଗ୍ଧାତ୍ ଘୃତମ୍ ଉତ୍ପଦ୍ୟତେ । ବୀଜାତ୍ ଅଙ୍କୁରୋ ଜାୟତେ ।

'ଜନିକର୍ତ୍ତୁଃ ପ୍ରକୃତିଃ'

୧୨ । ବାରଣାର୍ଥଧାତୁର ପ୍ରୟୋଗରେ ନିବାରିତମାନଙ୍କର ଈପ୍ସିତ ପଞ୍ଚମୀ ବିଭକ୍ତ୍ୟନ୍ତ ହୁଏ । ଯଥା—

ମାଷାତ୍ ଶ୍ୱାନଂ ନିବାରୟତି । 'ବାରଣାର୍ଥାନାମୀପ୍ସିତଃ'

୧୩ । ଅନ୍ୟ, ଭିନ୍ନ ଓ ଇତର ଶବ୍ଦ ଯୋଗରେ ପଞ୍ଚମୀ ବିଭକ୍ତି ହୁଏ । ଯଥା: —

ମିତ୍ରାତ୍ ଅନ୍ୟଃ ଇତରଃ ଭିନ୍ନଃ ବା କଃ ମାଂ ରକ୍ଷିଷ୍ୟତି ?

୧୪ । ଯାହାଠାରୁ ନିୟମିତଭାବରେ ଅଧ୍ୟୟନ କରାଯାଏ, ସେ ପଞ୍ଚମୀ ବିଭକ୍ତ୍ୟନ୍ତ ହୁଏ । ଯଥା: —

ରାମଃ ଗୁରୋଃ ବେଦଂ ପଠତି । 'ଆଖ୍ୟାତୋପଯୋଗେ'

୧୬ । ଯେ ଶୁଣାଏ ଅର୍ଥାତ୍ ଯାହାଠାରୁ ଶ୍ରବଣ କରାଯାଏ, ସେ ପଞ୍ଚମୀ ବିଭକ୍ତ୍ୟନ୍ତ ହୁଏ । ଯଥା:—

ବୃଦ୍ଧଃ ପୁରୋହିତାତ୍ ପୁରାଣଂ ଶୃଣୋତି । 'ଶ୍ରୁତ୍ୟର୍ଥାନାଂ ଶ୍ରାବୟିତା'

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:—କାଲି ମଧୁ ଶିକ୍ଷକଙ୍କ ଡରେ ସ୍କୁଲକୁ ଯାଇ ନାହିଁ । ଶ୍ରୀକୃଷ୍ଣ ମାଙ୍କ ଲୁଚି-କହୁଣୀ ଖାଇଥିଲେ । ତୁମେ ଯାହାକୁ ଘୃଣା କର, ସେ ତୁମ ଘରକୁ କିପରି ଆସିବ ? ମୁରବୀଙ୍କୁ ଲାଜ କରୁ ନ ଥିବା (ଅଭିଭାବକାତ୍ ଲଜ୍ଜମାନଃ) ଲୋକ ସୁଖ ପାଏ ନାହିଁ । ବୈଶାଖ ମାସରୁ ଆରମ୍ଭ କରି ପ୍ରତିଦିନ ବର୍ଷା (ବୃଷ୍ଟିଃ) ହେଉଅଛି ।

୨ । ବହିଃ, ଉତ୍ତରାହି, ପରମ୍, ଆରଭ୍ୟ, କୁତ୍ପ୍ରଭୃତି, ନିକଟେ ଓ ପ୍ରାକ୍—ଏହି ପଦଗୁଡ଼ିକୁ ବାକ୍ୟରେ ବ୍ୟବହାର କର ।

---

## ସମ୍ବନ୍ଧପଦ ଓ ଷଷ୍ଠୀ ବିଭକ୍ତି

୧ । କାରକସମ୍ବନ୍ଧବ୍ୟତୀତ ଜନ୍ୟଜନକ, ସେବ୍ୟସେବକ ଓ ଆଧାରାଧେୟ ପ୍ରଭୃତି ସମ୍ବନ୍ଧବୋଧକ ପଦଠାରେ ଷଷ୍ଠୀ ବିଭକ୍ତି ହୁଏ । ଯଥା:—

ରାମସ୍ୟ ପୁତ୍ରଃ । ରାଜ୍ଞଃ ପୁରୁଷଃ । କୂପସ୍ୟ ଜଳମ୍ ଇତ୍ୟାଦି ।

'ସମ୍ବନ୍ଧେ ଷଷ୍ଠୀ'

୨ । କୃତ୍ ପ୍ରତ୍ୟୟନିଷ୍ପନ୍ନ ପଦର କର୍ତ୍ତା ତଥା କର୍ମଠାରେ ଷଷ୍ଠୀ ବିଭକ୍ତି ହୁଏ । 'କର୍ତ୍ତୃକର୍ମଣୋଃ କୃତି'

(କ) କର୍ତ୍ତାଠାରେ:—ଅଶ୍ୱସ୍ୟ ଗତିଃ (ଗମ୍+କ୍ତି) । ରାମସ୍ୟ ପ୍ରବେଶଃ (ପ୍ର+ବିଶ୍+ଅଲ୍) । ଏଠାରେ ଗତିଃ ଓ ପ୍ରବେଶଃ କୃତ୍ ପ୍ରତ୍ୟୟନିଷ୍ପନ୍ନ ପଦ ଏବଂ ଅଶ୍ୱ ଓ ରାମ ଯଥାକ୍ରମେ ସେମାନଙ୍କର କର୍ତ୍ତା । ଏଣୁ ଅଶ୍ୱ ଓ ରାମ ଶବ୍ଦର ଷଷ୍ଠୀ ବିଭକ୍ତି ହୋଇଅଛି ।

(ଖ) କର୍ମଠାରେ:—ଧନସ୍ୟ ଦାନମ୍ (ଦା+ଲ୍ୟୁଟ୍) । ଗ୍ରାମସ୍ୟ ଗମନମ୍ (ଗମ୍+ଲ୍ୟୁଟ୍) । ଏଠାରେ ଦାନମ୍ ଓ ଗମନମ୍ କୃତ୍ ପ୍ରତ୍ୟୟନିଷ୍ପନ୍ନ ପଦ

ଏବଂ ଧନ ଓ ଗ୍ରାମ ଯଥାକ୍ରମେ ସେମାନଙ୍କର କର୍ମ । ଏଣୁ ଧନ ଓ ଗ୍ରାମ ଶବ୍ଦର ଷଷ୍ଠୀ ବିଭକ୍ତି ହୋଇଅଛି ।

୩ । କୃତ୍ ପ୍ରତ୍ୟୟନିଷ୍ପନ୍ନପଦର କର୍ତ୍ତା ଓ କର୍ମ ଉଭୟସ୍ଥାନରେ ଷଷ୍ଠୀ ବିଭକ୍ତି ହେଉଥିଲେ କେବଳ କର୍ମଠାରେ ଷଷ୍ଠୀ ବିଭକ୍ତି ହୁଏ । ଯଥା:— ହରେଣା ସୁଖସ୍ୟ ଭୋଗଃ (ଭୁଜ୍+ଘଞ୍) ଭବତ । ଏଠାରେ କୃତ୍ ପ୍ରତ୍ୟୟନିଷ୍ପନ୍ନ ପଦ ଭୋଗଃ, ଏହାର କର୍ତ୍ତା ହରି ଓ କର୍ମ ସୁଖ । ଏଣୁ ସୁଖ ଶବ୍ଦର ଷଷ୍ଠୀ ବିଭକ୍ତି ହୋଇଅଛି । 'ଉଭୟପ୍ରାପ୍ତୌ କର୍ମଣି'·

୪ । ଶତୃ ଓ ଶାନଚ୍, ଉକାରାନ୍ତ, ଉକ, ଉମୁନ୍, କ୍ୱାଚ୍, ଲ୍ୟପ୍, କ୍ତ, କ୍ତବତୁ, ଖଲ୍ ଓ ଶୀଳାର୍ଥ ତୃନ୍ ପ୍ରଭୃତି କୃତ୍ ପ୍ରତ୍ୟୟଯୁକ୍ତ ପଦଯୋଗରେ କର୍ତ୍ତା କିମ୍ବା କର୍ମଠାରେ ଷଷ୍ଠୀ ବିଭକ୍ତି ହୁଏ ନାହିଁ । ଯଥା:—

ଶତୃ—ଗୃହଂ ଗଚ୍ଛନ୍ । ଶାନଚ୍—ଧନଂ ଲଭମାନଃ । ଉ—ଦୁଗ୍ଧଂ ପିପାସୁଃ । ଇଷ୍ଣୁ—କ୍ଲେଶଂ ସହିଷ୍ଣୁଃ । ଉକ—ଗ୍ରାମଂ ଗାମୁକଃ । ତୁମୁନ୍—ଗୃହଂ ଗନ୍ତୁମ୍ । କ୍ତ୍ୱାଚ୍—ମାଂ ଦୃଷ୍ଟ୍ୱା । ଲ୍ୟପ୍—ମନ୍ଦିରମାଗମ୍ୟ । କ୍ତ—ଗ୍ରାମଂ ଗତଃ । କ୍ତବତୁ—ସ ମୃଗଂ ହତବାନ୍ । ଖଲ୍—ତ୍ୱୟା ଇଦଂ ଦୁଷ୍କରମ୍ । ତୃନ୍—ଧନଂ ଦାତା; ମାତ୍ର 'ଧନସ୍ୟ ଦାତା' (ଦଦାତି ଇତି ଦାତା, 'ଦା+ତୃଚ୍') ଏଠାରେ ଷଷ୍ଠୀ ହେବ ।

୫ । ବର୍ତ୍ତମାନକାଳୀନ କ୍ତ ପ୍ରତ୍ୟୟାନ୍ତ ପଦର କର୍ତ୍ତାଠାରେ ଷଷ୍ଠୀ ବିଭକ୍ତି ହୁଏ । ଯଥା: —

ସର୍ବେଷାଂ ବିଦ୍ୱାନ୍ ପୂଜିତଃ (ପୂଜା କରନ୍ତି) 'ପୂଜ୍+ବର୍ତ୍ତମାନେ 'କ୍ତ' । ଇଦମସ୍ମାକଂ ମତମ୍(ଏହା ଆମ୍ଭମାନଙ୍କର ମତ)'ମନ୍+ବର୍ତ୍ତମାନେ'କ୍ତ'

'କ୍ତସ୍ୟ ଚ ବର୍ତ୍ତମାନେ'

୬ । କୃତ୍ୟ (ତବ୍ୟ, ଅନୀୟ, କ୍ୟପ୍, ଣ୍ୟତ୍ ଓ ଯତ୍) ପ୍ରତ୍ୟୟାନ୍ତ ପଦର କର୍ତ୍ତାଠାରେ ବିକଳ୍ପେ ଷଷ୍ଠୀ ବିଭକ୍ତି ହୁଏ । ଯଥା: —

ତବ କୃପୟା ବା ଚନ୍ଦ୍ରଃ ଦ୍ରଷ୍ଟବ୍ୟଃ (ଦେଖିବା ଉଚିତ) । ମମ ମୟା ବା ଇଦଂ କାର୍ଯ୍ୟମ୍ (କରିବା ଉଚିତ) । 'କୃତ୍ୟାନାଂ କର୍ତ୍ତରି ବା'

୭ । ନିମ୍ନଲିଖିତ ଅବ୍ୟୟପଦ ଯୋଗରେ ଷଷ୍ଠୀ ବିଭକ୍ତି ହୁଏ ।

ପୁରସ୍ତାତ୍ (ସମ୍ମୁଖରେ) – ମମ ପୁରସ୍ତାତ୍ ଉପବିଶ ।

ଅଧଃ, ଅଧସ୍ତାତ୍ (ତଳେ)—ବୃକ୍ଷସ୍ୟ ଅଧସ୍ତାତ୍ (ଅଧଃ) ଗାବଃ ଚରନ୍ତି ।

ପୁରଃ (ଆଗରେ)—ତବ ପୁରଃ ସ ଗଚ୍ଛତି ।

ଉତ୍ତରାତ୍ (ଉତ୍ତରରେ) – ଗୃହସ୍ୟ ଉତ୍ତରାତ୍ ବିଦ୍ୟାଳୟଃ ।

ଦକ୍ଷିଣେନ (ଦକ୍ଷିଣରେ) – ବିଦ୍ୟାଳୟସ୍ୟ ଦକ୍ଷିଣେନ କ୍ରୀଡ଼ାପ୍ରାନ୍ତରମ୍ ।

(ଦକ୍ଷିଣେନ ଯୋଗରେ ଦ୍ୱିତୀୟା ବିଭକ୍ତି ମଧ୍ୟ ହୁଏ ।)

୮ । ପଞ୍ଚକୃତ୍ୱଃ, ଷଟ୍‌କୃତ୍ୱଃ ଏବଂ ସପ୍ତକୃତ୍ୱଃ ପ୍ରଭୃତି କୃତ୍ୱସୁ ପ୍ରତ୍ୟୟାନ୍ତ ପଦ ଓ ଦ୍ୱିଃ, ତ୍ରିଃ ଏବଂ ଚତୁଃ ପ୍ରଭୃତି ସୁଚ୍ ପ୍ରତ୍ୟୟାନ୍ତ ପଦଯୋଗରେ କାଳାଧିକରଣରେ ଷଷ୍ଠୀ ବିଭକ୍ତି ହୁଏ । ଯଥା:—

ମାସସ୍ୟ ପଞ୍ଚକୃତ୍ୱଃ ଗ୍ରାମଂ ନ ଗଚ୍ଛ । ଅହଂ ଦିବସସ୍ୟ ତ୍ରିଃ ଖାଦାମି ଇତ୍ୟାଦି । ଏଠାରେ ମାସେ ସ୍ଥାନରେ ମାସସ୍ୟ ଓ ଦିବସେ ସ୍ଥାନରେ ଦିବସସ୍ୟ ହୋଇଅଛି । 'କୃତ୍ୱସୁସୁଚୋଃ କାଳାଧିକରଣେ'

୯ । ପ୍ରତି+ଭୂ ଧାତୁର କର୍ତ୍ତାଠାରେ ଷଷ୍ଠୀ ବିଭକ୍ତି ହୁଏ । ଯଥା: –

ଦୁଷ୍ଟାରଂ ପ୍ରତିଭବତି ମେ ।

୧୦ । ହେତୁ ଶବ୍ଦର ପ୍ରୟୋଗରେ ନିମିତ୍ତବୋଧକ ଶବ୍ଦରୁ ଉତ୍ତର ଷଷ୍ଠୀ ବିଭକ୍ତି ହୁଏ ।

ଧନସ୍ୟ ହେତୋଃ ତସ୍ୟ ଗମଃ । ଦୁଃଖସ୍ୟ ହେତୋଃ ସ କ୍ରନ୍ଦତି ।

'ଷଷ୍ଠୀ ହେତୁପ୍ରୟୋଗେ'

## ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର—ଜ୍ଞାନୀଙ୍କୁ ଲୋକମାନେ ଭଲରୂପେ ଆଦର କରନ୍ତି (ସମାଦ୍ରିୟନ୍ତେ) । ମୁଁ ଦିନରେ ପାଞ୍ଚଥର ଖାଇ ମଧ୍ୟ ବେଳେ ବେଳେ ଭୋକରେ କାନ୍ଦେ । ଆମ ଘର ଆଗରେ ପୂର୍ବେ ବଡ଼

ଆମ୍ରଗଛ ଥିଲା । ରାଜାଙ୍କ ଆଦେଶରେ ମନ୍ତ୍ରୀମାନେ ପ୍ରଜାଙ୍କ ଶୁଶ୍ରୂଷା (ଆବେଦନଂ) ଶୁଣୁଅଛନ୍ତି । ଏ ଜଣେ ଚୋର ପରି ମୋର ମନେ ହେଉଅଛୁ । ବଗିଚାର ଉତ୍ତରରେ ପୋଖରୀ ଅଛୁ ।

୨ । ସମ୍ବନ୍ଧପଦକୁ କାରକ କାହିଁକି କୁହାଯାଏ ନାହିଁ ?

---

## ଅଧିକରଣକାରକ ଓ ସପ୍ତମୀ ବିଭକ୍ତି

୧ । କ୍ରିୟାର ଆଧାର ଅଧିକରଣ । ଅଧିକରଣକାରକରେ ସପ୍ତମୀ ବିଭକ୍ତି ହୁଏ । ଯଥା: —

ସ ଗୃହେ ଅସ୍ତି । ବ୍ରାହ୍ମଣଃ ଆସନେ ଉପବିଶତି । ଏଠାରେ ଗୃହ ଓ ଆସନ ଅଧିକରଣ । 'ଅଧିକରଣେ ସପ୍ତମୀ'

୨ । ଯେଉଁ କର୍ତ୍ତା ବା କର୍ମର କ୍ରିୟାଦ୍ୱାରା ଅନ୍ୟ କ୍ରିୟା ଲକ୍ଷିତ ହୁଏ, ସେହି କ୍ରିୟାବୋଧକ ପଦଠାରେ ଓ ତାହାର କର୍ତ୍ତା ବା କର୍ମଠାରେ ସପ୍ତମୀ ବିଭକ୍ତି ହୁଏ । ଏହାକୁ 'ଭାବେ ସପ୍ତମୀ' କହନ୍ତି ।

'ଯସ୍ୟ ଚ ଭାବେନ ଭାବଲକ୍ଷଣମ୍'

ପୂର୍ବକ୍ରିୟାବୋଧକ ପଦ କର୍ତ୍ତୃବାଚ୍ୟର ହୋଇଥିଲେ କର୍ତ୍ତାଠାରେ ସପ୍ତମୀ ଓ କର୍ମବାଚ୍ୟର ହୋଇଥିଲେ କର୍ମଠାରେ ସପ୍ତମୀ ବିଭକ୍ତି ହୁଏ ।

କର୍ତ୍ତୃବାଚ୍ୟ: — ମୟି ଆଗତେ ସ ଗତଃ ।

କର୍ମବାଚ୍ୟ: — ରାମେଣ ରାବଣେ ହତେ ଦେବାଃ ଆନନ୍ଦିତାଃ ଅଭବନ୍ ।

ଭାବେ ସପ୍ତମୀସ୍ଥଳରେ କ୍ରିୟାବୋଧକ ବିଶେଷଣଟି ବର୍ତ୍ତମାନ, ଅତୀତ କିମ୍ବା ଭବିଷ୍ୟତ୍କାଳକୁ ପ୍ରକାଶ କରୁଥାଏ ।

(କ) ବର୍ତ୍ତମାନକାଳକୁ ବୁଝାଉଥିଲେ ଶତୃ କିମ୍ବା ଶାନଚ୍ ପ୍ରତ୍ୟୟାନ୍ତ ଶବ୍ଦ ବ୍ୟବହୃତ ହୁଏ । ଯଥା: —

ମୟି ଗଚ୍ଛତି ରାମଃ ଆଗଚ୍ଛତ୍ (ମୁଁ ଗଲାବେଳେ ରାମ ଆସିଥିଲା) 'ଗମ୍+ଶତୃ' ଗଚ୍ଛତ୍, ସପ୍ତମୀରେ ଗଚ୍ଛତି । ତ୍ୱୟି ଧନଂ ଲଭମାନେ ପିତା

ହୃଷ୍ୟତ (ତୁମେ ଧନ ଲାଭ କଲବେଳେ ବାପା ଖୁସି ହୁଅନ୍ତି) 'ଲଭ୍+ଶାନଚ୍' ଲଭମାନ, ସପ୍ତମୀରେ ଲଭମାନେ ।

(ଖ) ଅତୀତକାଳକୁ ବୁଝାଉଥିଲେ କ୍ତ କମ୍ବା କ୍ତବତୁ ପ୍ରତ୍ୟୟାନ୍ତ ଶବ୍ଦ ବ୍ୟବହୃତ ହୁଏ । ଯଥା: –

ପିତରି ମୃତେ ପୁତ୍ରାଃ ଦୁଃଖିତା ଅଭବନ୍ (ବାପା ମଲା ପରେ ପୁଅମାନେ ଦୁଃଖିତ ହେଲେ) 'ମୃ+କ୍ତ' ମୃତ, ସପ୍ତମୀରେ ମୃତେ । ମଯି ଗତବତି ସ ଆଗତଃ, 'ଗମ୍+କ୍ତବତୁ' ଗତବତ୍, ସପ୍ତମୀରେ ଗତବତି ।

(ଗ) ଭବିଷ୍ୟତ୍‌କାଳକୁ ବୁଝାଉଥିଲେ ସ୍ୟନ୍ତୃ କମ୍ବା ସ୍ୟମାନ ପ୍ରତ୍ୟୟାନ୍ତ ଶବ୍ଦ ବ୍ୟବହୃତ ହୁଏ । ଯଥା:—

ବାଳକେଷୁ ଆଗମିଷ୍ୟତ୍ସୁ ବୟଂ ଗମିଷ୍ୟାମଃ (ପିଲାମାନେ ଆସିଲେ ଆମେ ଯିବୁ) 'ଆ+ଗମ୍+ସ୍ୟନ୍ତୃ' ଆଗମିଷ୍ୟତ୍, ସପ୍ତମୀରେ ଆଗମିଷ୍ୟତ୍ସୁ । ରାମେ ପିତରଂ ସେବିଷ୍ୟମାଣେ ଗୁରୁଃ ଆନନ୍ଦିତଃ ଭବିଷ୍ୟତି (ରାମ ପିତାଙ୍କ ସେବା କଲେ ଗୁରୁ ଆନନ୍ଦିତ ହେବେ) 'ସେବ୍+ସ୍ୟମାନ' ସେବିଷ୍ୟମାଣ, ସପ୍ତମୀରେ ସେବିଷ୍ୟମାଣେ ।

ଯଦି କେବେ ସପ୍ତମୀରେ ବ୍ୟବହୃତ ପୂର୍ବବାକ୍ୟର କର୍ତ୍ତା କମ୍ବା କର୍ମ ପରବାକ୍ୟରେ କଥିତ ହୁଏ, ତେବେ ସପ୍ତମୀ ବିଭକ୍ତି ହୁଏ ନାହିଁ । ଯଥା: – 'ତୁମେ ଆସିଲେ ମୁଁ ତୁମ ସହ ଯିବି' ଏହାର ଅନୁବାଦ 'ତ୍ୱୟି ଆଗମିଷ୍ୟତି ଅହଂ ତ୍ୱୟା ସହ ଗମିଷ୍ୟାମି' ଏହିପରି କରି ନ ଯାଇ 'ଆଗମିଷ୍ୟତା ତ୍ୱୟା ସହ ଅହଂ ଗମିଷ୍ୟାମି' ଏହିପରି କରାଯିବ ।

୩ । ଇନ୍‌ଯୁକ୍ତ କ୍ତ ପ୍ରତ୍ୟୟାନ୍ତ ପଦର କର୍ମଠାରେ ସପ୍ତମୀ ବିଭକ୍ତି ହୁଏ । ଯଥା:—

ସର୍ବକାର୍ଯ୍ୟେଷୁ କୃତୀ ଅୟଂ ଜନଃ ଆଗଚ୍ଛତି (କୃ+କ୍ତ+ଇନ୍ = କୃତିନ୍, ପ୍ରଥମାରେ କୃତୀ) । 'କ୍ତସ୍ୟେନ୍ୱିଷୟସ୍ୟ କର୍ମଣି'

୪ । ଶରୀରର କୌଣସି ଅଙ୍ଗକୁ ପୃଥକ୍ ଭାବେ ଗ୍ରହଣ କରିବା ବୁଝାଇଲେ ସେହି ଅଙ୍ଗବାଚକ ଶବ୍ଦରୁ ଉତ୍ତର ଦ୍ୱିତୀୟା ବିଭକ୍ତି ନ ହୋଇ ସପ୍ତମୀ ବିଭକ୍ତି ହୁଏ । ଯଥା: —

ସ ରାମଂ କରେ ଧୃତ୍ୱା ନୟତି (ହାତ ଧରି ନେଉଅଛି) । କେଶେଷୁ ଧୃତ୍ୱା ଆକର୍ଷତି । 'ଅବଚ୍ଛେଦେ ସପ୍ତମୀ'

୫ । କ୍ରିୟା, ଗୁଣ, ଜାତି ଓ ନାମ ଦ୍ୱାରା ସମୁଦାୟରୁ ଗୋଟିକୁ ପୃଥକ୍ କରାଗଲେ ସମୁଦାୟବୋଧକ ଶବ୍ଦରୁ ଉତ୍ତର ଷଷ୍ଠୀ ଓ ସପ୍ତମୀ ବିଭକ୍ତି ହୁଏ । ଯଥା: —

ଛାତ୍ରେଷୁ ଛାତ୍ରାଣାଂ ବା କ୍ରୀଡ଼ନ୍ତଃ ଚତୁରତମାଃ । ଗୋଷୁ ଗବାଂ ବା କୃଷ୍ଣା ବହୁକ୍ଷୀରା । ବର୍ଣ୍ଣେଷୁ ବର୍ଣ୍ଣାନାଂ ବା ବ୍ରାହ୍ମଣଃ ଶ୍ରେଷ୍ଠଃ । କବିଷୁ କବୀନାଂ ବା କାଳିଦାସଃ ଶ୍ରେଷ୍ଠଃ । 'ନିର୍ଦ୍ଧାରଣେ ଷଷ୍ଠୀସପ୍ତମ୍ୟୌ'

୬ । କର୍ମସହିତ ଅବୟବାବୟବିସମ୍ବନ୍ଧ ଥିଲେ ନିମିତ୍ତବୋଧକ ଶବ୍ଦରୁ ଉତ୍ତର ଚତୁର୍ଥୀ ବିଭକ୍ତି ନ ହୋଇ ସପ୍ତମୀ ବିଭକ୍ତି ହୁଏ । ଯଥା: —

ଚର୍ମଣି ଦ୍ୱୀପିନଂ ହତବାନ୍ । କେଶେଷୁ ଚମରୀଂ ହନ୍ତି । ଏଠାରେ ଦ୍ୱୀପୀ ଓ ଚମରୀ କର୍ମ । ଏମାନଙ୍କ ସହ ନିମିତ୍ତବୋଧକ ପଦ 'ଚର୍ମ' ଓ 'କେଶ'ର ଅବୟବାବୟବିସମ୍ବନ୍ଧ ଅଛି । 'ନିମିତ୍ତାତ୍‌କର୍ମଯୋଗେ'

୭ । ଅନାଦର ବୁଝାଇଲେ ଅନାଦୃତଠାରେ ଷଷ୍ଠୀ ଓ ସପ୍ତମୀ ବିଭକ୍ତି ହୁଏ । ଯଥା: —

ପଶ୍ୟତଃ ହରିଶ୍ଚନ୍ଦ୍ରସ୍ୟ ପଶ୍ୟତି ହରିଶ୍ଚନ୍ଦ୍ରେ ବା ବିଶ୍ୱାମିତ୍ରଃ ଶୈବ୍ୟାମ-ତାଡ଼ୟତ୍ (ହରିଶ୍ଚନ୍ଦ୍ରମନାଦୃତ୍ୟ) । ରୁଦତି ମୟି ରୁଦତଃ ମମ ବା ଶ୍ୱା ମାଂସମନୟତ୍ (ମାମନାଦୃତ୍ୟ) । 'ଅନାଦରେ ଷଷ୍ଠୀସପ୍ତମ୍ୟୌ'

୮ । ଯାହାକୁ ବିଶ୍ୱାସ କରାଯାଏ, ତାହାଠାରେ ସପ୍ତମୀ ବିଭକ୍ତି ହୁଏ । ଯଥା: — ରାମଃ ଗୋବିନ୍ଦେ ବିଶ୍ୱସିତି (ବିଶ୍ୱାସ କରେ) । ମୟି ତ୍ୱଂ ବିଶ୍ୱସିହି ।

୯ । ଯାହାକୁ ସ୍ନେହ କରାଯାଏ, ତାହାଠାରେ ସପ୍ତମୀ ବିଭକ୍ତି ହୁଏ । ଯଥା: —
ମାତା ପୁତ୍ରେ ସ୍ନିହ୍ୟତି (ଭଲପାଏ) ତ୍ୱଂ ତସ୍ମିନ୍ ଅସ୍ନିହ୍ୟଃ ।

୧୦ । ଯାହାର ଯୋଗ୍ୟତା ବୁଝାଏ, ଯାହାଠାରେ ଅନୁରକ୍ତ ହେବାକୁ ହୁଏ ଓ ଯାହାଠାରେ କିଛି ସମ୍ଭବପର ହୁଏ,ତାହାଠାରେ ସପ୍ତମୀ ବିଭକ୍ତି ହୁଏ ।
ଯଥା: —

ତ୍ରୈଲୋକ୍ୟସ୍ୟ ଆଧିପତ୍ୟଂ ତ୍ୱୟି ଯୁଜ୍ୟତେ । ଶିଷ୍ୟାଃ ଗୁରୌ ଅନୁରକ୍ତାଃ । କଥଂ ଭବାଦୃଶେ ଜନେ ଇଦଂ ସମ୍ଭାବ୍ୟତେ ?

## ମିଶ୍ରବିଭକ୍ତି

୧ । ବିନା(ବ୍ୟତୀତ) ଯୋଗରେ ଦ୍ୱିତୀୟା, ତୃତୀୟା ଓ ପଞ୍ଚମୀ ବିଭକ୍ତି ହୁଏ ।
ଯଥା: —

ରାମଂ ରାମେଣ ରାମାତ୍ ବା ବିନା କଃ ଇଦଂ କରିଷ୍ୟତି ?

୨ । ଋତେ (ବ୍ୟତୀତ) ଯୋଗରେ ଦ୍ୱିତୀୟା ଓ ପଞ୍ଚମୀ ବିଭକ୍ତି ହୁଏ । ଯଥା:—
ଶ୍ରମଂ ଶ୍ରମାତ୍ ବା ଋତେ ବିଦ୍ୟା ନ ଲଭ୍ୟତେ ।

୩ । ତୁଲ୍ୟାର୍ଥ ଶବ୍ଦ ଯୋଗରେ ତୃତୀୟା ଓ ଷଷ୍ଠୀ ବିଭକ୍ତି ହୁଏ; ମାତ୍ର ତୁଳା ଓ ଉପମା ଶବ୍ଦ ଯୋଗରେ କେବଳ ଷଷ୍ଠୀ ବିଭକ୍ତି ହୁଏ । ଯଥା: —
ରାମେଣ ରାମସ୍ୟ ବା ତୁଲ୍ୟଃ (ସମାନଃ, ସଦୃଶଃ, ସମଃ) ରାଜା ନାସ୍ତି; କିନ୍ତୁ ଶ୍ରୀକୃଷ୍ଣସ୍ୟ ତୁଳା ନାସ୍ତି । କେଶବସ୍ୟ ଉପମା ନାସ୍ତି ।

୪ । ପ୍ରକୃତ ଗମନ ବୁଝାଉଥିଲେ ଓ ମାର୍ଗବାଚକ ଶବ୍ଦ କର୍ମ ହୋଇ ନ ଥିଲେ ଗମନାର୍ଥକ କ୍ରିୟାର କର୍ମଠାରେ ଦ୍ୱିତୀୟା ଓ ଚତୁର୍ଥୀ ବିଭକ୍ତି ହୁଏ ।
ଯଥା: —

ଛାତ୍ରଃ ବିଦ୍ୟାଳୟଂ ବିଦ୍ୟାଳୟାୟ ବା ଗଚ୍ଛତି, କିନ୍ତୁ ସ ମନସା ସ୍ୱର୍ଗଂ ଗଚ୍ଛତି (ପ୍ରକୃତରେ ନୁହେଁ) ଓ ରାମଃ ମାର୍ଗଂ ଗଚ୍ଛତି (ମାର୍ଗ କର୍ମ) ଏଠାରେ ଚତୁର୍ଥୀ ବିଭକ୍ତି ହେବ ନାହିଁ ।

୫ । ଭାବବାଚ୍ୟବହୃତ କ୍ତ ପ୍ରତ୍ୟୟାନ୍ତ ପଦର କର୍ତ୍ତାଠାରେ ତୃତୀୟା ଓ ଷଷ୍ଠୀ ବିଭକ୍ତି ହୁଏ । ଯଥା:—

ଭବତା ତବ ବା କୀର୍ତ୍ତିତମ୍ । ମୟା ମମ ବା ହସିତମ୍ ।

୬ । ସ୍ମରଣାର୍ଥ, ଦୟ୍ ଓ ଈଶ୍ ଧାତୁର କର୍ମଠାରେ ଦ୍ୱିତୀୟା ଓ ଷଷ୍ଠୀ ବିଭକ୍ତି ହୁଏ । ଯଥା: —

ଶ୍ୟାମଃ ପିତରଂ ପିତୁଃ ବା ସ୍ମରତି । ଧନୀ ଦରିଦ୍ରଂ ଦରିଦ୍ରସ୍ୟ ବା ଦୟତେ । ପିତା ପୁତ୍ରଂ ପୁତ୍ରସ୍ୟ ବା ଈଷ୍ଟେ । 'ବା ସ୍ମରଣାର୍ଥଦୟେଶାମ୍'

୭ । ତୃପ୍ତ୍ୟର୍ଥ ପଦଯୋଗରେ ତୃତୀୟା ଓ ଷଷ୍ଠୀ ବିଭକ୍ତି ହୁଏ । ଯଥା:—

ସ ଜଳେନ ଜଳସ୍ୟ ବା ତୃପ୍ୟତି । ଅଗ୍ନିଃ କାଷ୍ଠେନ କାଷ୍ଠସ୍ୟ ବା ତୃପ୍ତବାନ୍ ।

୮ । ଦିବାଦିଗଣୀୟ ମନ୍ ଧାତୁର ଅବଜ୍ଞାବୋଧକ କର୍ମଠାରେ ଦ୍ୱିତୀୟା ଓ ଚତୁର୍ଥୀ ବିଭକ୍ତି ହୁଏ । ଯଥା: —

ସ ତ୍ୱାଂ ତୃଣାୟ ତୃଣଂ ବା ମନ୍ୟତେ ।

ମାତ୍ର କାକ, ଶୃଗାଳ, ଶୁକ ଓ ନୌ ପ୍ରଭୃତି କର୍ମ ହେଲେ ଚତୁର୍ଥୀ ବିଭକ୍ତି ହୁଏ ନାହିଁ । ଯଥା:—

ତ୍ୱାମହଂ ଶୃଗାଳଂ ମନ୍ୟେ । ସ ମାଂ ଶୁକଂ ମନ୍ୟତେ ।

'ମନ୍ୟକର୍ମଣ୍ୟନାଦରେ ବିଭାଷା'

## ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:—ଦୁଃଶାସନ ଦ୍ରୌପଦୀଙ୍କ ବାଳ ଧରି ନେଇଥିଲା । ମୁଁ ଗୃହକୁ ଗୃହକୁ କୁକୁର ମାଂସ ଖାଇଗଲା । ତୁମେ ଯାହାକୁ ଭଲପାଅ, ସେ ସମସ୍ତଙ୍କୁ ବିଶ୍ୱାସ କରେ । ଗୁରୁ ପଢ଼ିଲେ ଛାତ୍ରମାନେ ତାଙ୍କ ସହ ପଢ଼ିବେ । ରାଜା ପରାସ୍ତ ହେବାରୁ ପ୍ରଜାମାନେ ବଡ଼ପାଟିରେ କାନ୍ଦିଥିଲେ । ମୁଁ ବର୍ତ୍ତମାନ ଖାଦ୍ୟରେ ତୃପ୍ତ ହେବି ନାହିଁ, ମୋତେ ଜଳ ଦିଅ ।

୨ । ସଂଶୋଧନ କର: — ସୂର୍ଯ୍ୟଃ ଉଦ୍ୟତେ ପଦ୍ମଃ ପ୍ରସ୍ଫୁଟନ୍ତି । ଦୁଷ୍ଟାନ୍ ନ ସ୍ପୃହ୍ୟନ୍ତ ତ୍ୱମ୍ । ଗ୍ରାମଂ ବିଶ୍ୱାସ କୁରୁ ଭବାନ୍ । ସ ତସ୍ୟ ହସ୍ତଂ ଧୃତବାନ୍ ।

୩ । କ୍ରୁଧା, ପ୍ରେଷ୍ଠଃ, ହସ୍ତେ, ବିଶ୍ୱସିତ ଓ ସ୍ପୃହ୍ୟାମି — ଏହି ପଦମାନଙ୍କୁ ବ୍ୟବହାର କରି ବାକ୍ୟ ରଚନା କର ।

୪ । ରେଖାରୂଢ଼ ପଦମାନଙ୍କର କାରଣ ସହ ବିଭକ୍ତି ନିର୍ଣ୍ଣୟ କର:—
ଲଘୁପତନକଃ ଚଞ୍ଚ୍ୱା ବଳଟରୁ । ଅଭିମୁଖେ ବଦ୍ଧୌ ଲାଲସ୍ତା । ସିଦ୍ଧୋଽର୍ଥଃ । ହରଶର୍ମା ସୁବର୍ଣ୍ଣାଦିକଂ ତସ୍ମୈ ଦର୍ଶିତବାନ୍ । ନାରଦଃ ତ୍ରିଦିବଂ ପ୍ରତି ଗତଃ । ମନ୍ଥରଃ ସାଦରଂ ହିରଣ୍ୟକଂ ସମ୍ପୂଜ୍ୟାହ । ଖଡ୍ଗେନ ଶିରଚ୍ଛେଦଃ କାର୍ଯ୍ୟ । ତ୍ୱମଦ୍ୟ ତସ୍ୟା ସହ କଲହଂ କୃତବାନ୍ । ଲୋଚନାଭ୍ୟାଂ ବିହୀନସ୍ୟ ଦର୍ପଣଃ କିଂ କରିଷ୍ୟତି ?

---

# ସନ୍ଧି

ପରସ୍ପର ନିକଟବର୍ତ୍ତୀ ବର୍ଣ୍ଣ ଦୁଇଟିର କିମ୍ବା ସେଥି ମଧ୍ୟରୁ ଗୋଟିକର ଯେଉଁ ପରିବର୍ତ୍ତନ ଘଟେ, ତାହାକୁ ସନ୍ଧି କହନ୍ତି । ସନ୍ଧି ତିନି ପ୍ରକାର । ଯଥା: — ସ୍ୱରସନ୍ଧି, ବ୍ୟଞ୍ଜନସନ୍ଧି ଓ ବିସର୍ଗସନ୍ଧି ।

## ସ୍ୱରସନ୍ଧି

ସ୍ୱରବର୍ଣ୍ଣ ଓ ସ୍ୱରବର୍ଣ୍ଣର ସନ୍ନିକର୍ଷରେ ଯେଉଁ ପରିବର୍ତ୍ତନ ଘଟେ, ତାହାକୁ ସ୍ୱରସନ୍ଧି କହନ୍ତି ।

୧ । ଦେବ + ଅସୁରୌ = ଦେବାସୁରୌ । ଦେବ + ଆଲୟଃ = ଦେବାଲୟଃ । ରମା + ଅତ୍ର = ରମାତ୍ର । ବିଦ୍ୟା + ଆଲୟଃ = ବିଦ୍ୟାଳୟଃ ।

ସୂତ୍ର — ଅ ବା ଆ ପରେ ଅ ବା ଆ ଥିଲେ ଉଭୟ ବର୍ଣ୍ଣସ୍ଥାନରେ ଆ ହୁଏ ଓ ସେହି ଆ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୨ । ମୁନି + ଇନ୍ଦ୍ରଃ = ମୁନୀନ୍ଦ୍ରଃ । ଗିରି + ଈଶଃ = ଗିରୀଶଃ । ଗୌରୀ + ଇନ୍ଦୁ = ଗୌରୀନ୍ଦୁ । ଗୌରୀ + ଈଶ୍ୱରଃ = ଗୌରୀଶ୍ୱରଃ ।

ସୂତ୍ର — ଇ ବା ଈ ପରେ ଇ ବା ଈ ଥିଲେ ଉଭୟସ୍ଥ ବର୍ଣ୍ଣସ୍ଥାନରେ ଈ ହୁଏ ଓ ସେହି ଈ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୩ । ବଧୂ + ଉଦୟଃ = ବଧୂଦୟଃ । ଲଘୁ + ଊର୍ମିଃ = ଲଘୂର୍ମିଃ ।
ବଧୂ + ଉତ୍ସବଃ = ବଧୂତ୍ସବଃ । ଭୂ + ଊର୍ଦ୍ଧ୍ୱମ୍ = ଭୂର୍ଦ୍ଧ୍ୱମ୍ ।

ସୂତ୍ର — ଉ ବା ଊ ପରେ ଉ ବା ଊ ଥିଲେ ଉଭୟସ୍ଥ ବର୍ଣ୍ଣସ୍ଥାନରେ ଊ ହୁଏ ଓ ସେହି ଊ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୪ । ପିତୃ + ଋଣମ୍ = ପିତୄଣମ୍ । ଦାତୃ + ଋଦ୍ଧିଃ = ଦାତୄଦ୍ଧିଃ ।

ସୂତ୍ର — ଋ ପରେ ଋ ଥିଲେ ଉଭୟସ୍ଥ ବର୍ଣ୍ଣସ୍ଥାନରେ ୠ ହୁଏ ଓ ସେହି ୠ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୫ । ଦେବ + ଇନ୍ଦ୍ରଃ = ଦେବେନ୍ଦ୍ରଃ । ନର + ଈଶଃ = ନରେଶଃ ।
ସୀତା + ଇଚ୍ଛା = ସୀତେଚ୍ଛା । ରମା + ଈଶଃ = ରମେଶଃ ।

ସୂତ୍ର — ଅ ବା ଆ ପରେ ଇ ବା ଈ ଥିଲେ ଉଭୟସ୍ଥ ବର୍ଣ୍ଣସ୍ଥାନରେ ଏ ହୁଏ ଓ ସେହି ଏ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୬ । ସୂର୍ଯ୍ୟ + ଉଦୟଃ = ସୂର୍ଯ୍ୟୋଦୟଃ । ଅଳ୍ପ + ଊନମ୍ = ଅଳ୍ପୋନମ୍ ।
ଗଙ୍ଗା + ଉଦକମ୍ = ଗଙ୍ଗୋଦକମ୍ । ମହା + ଊର୍ମିଃ = ମହୋର୍ମିଃ ।

ସୂତ୍ର — ଅ ବା ଆ ପରେ ଉ ବା ଊ ଥିଲେ ଉଭୟସ୍ଥ ବର୍ଣ୍ଣସ୍ଥାନରେ ଓ ହୁଏ ଏବଂ ସେହି ଓ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୭ । ଦେବ + ଋଷିଃ = ଦେବର୍ଷିଃ । ମହା + ଋଷିଃ = ମହର୍ଷିଃ ।

ସୂତ୍ର — ଅ ବା ଆ ପରେ ଋ ଥିଲେ ଉଭୟସ୍ଥ ବର୍ଣ୍ଣସ୍ଥାନରେ ଅର୍ ହୁଏ ଓ ଅ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ଏବଂ ର୍ ରେଫ ହୋଇ ପରବର୍ଣ୍ଣ ଉପରକୁ ଯାଏ ।

୮ । ଶୀତ + ଋତଃ = ଶୀତାର୍ତ୍ତଃ । କ୍ଷୁଧା + ଋତଃ = କ୍ଷୁଧାର୍ତ୍ତଃ ।

ସୂତ୍ର — ତୃତୀୟାତତ୍ପୁରୁଷ ସମାସ ହେଉଥିଲେ ଓ ଋତ ଶବ୍ଦ ପରେ ଥିଲେ ଅ ବା ଆ ପରେ ଋ ଥିଲେ ଉଭୟସ୍ଥ ବର୍ଣ୍ଣସ୍ଥାନରେ ଆର୍ ହୁଏ ଓ ଆ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ଏବଂ ର୍ ରେଫ ହୋଇ ପରବର୍ଣ୍ଣ ଉପରକୁ ଯାଏ ।

୯ । ଅଦ୍ୟ+ଏକଃ = ଅଦ୍ୟୈକଃ । ମତ+ଐକ୍ୟମ୍ = ମତୈକ୍ୟମ୍ ।
ତ୍ୱୟା+ଏବ = ତ୍ୱୟୈବ । ବିଦ୍ୟା+ଐଶ୍ୱର୍ଯ୍ୟମ୍ = ବିଦ୍ୟୈଶ୍ୱର୍ଯ୍ୟମ୍ ।

ସୂତ୍ର—ଅ ବା ଆ ପରେ ଏ ବା ଐ ଥିଲେ ଉଭୟ ବର୍ଣ୍ଣସ୍ଥାନରେ ଐ ହୁଏ ଓ ସେହି ଐ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୧୦ । ମମ+ଓଦନମ୍ = ମମୌଦନମ୍ । ତବ+ଔପମ୍ୟମ୍ = ତବୌପମ୍ୟମ୍ ।
ମହା+ଓଷଧିଃ = ମହୌଷଧିଃ । ବିଦ୍ୟା+ଔନ୍ନତ୍ୟମ୍ = ବିଦ୍ୟୌନ୍ନତ୍ୟମ୍ ।

ସୂତ୍ର—ଅ ବା ଆ ପରେ ଓ ବା ଔ ଥିଲେ ଉଭୟ ବର୍ଣ୍ଣସ୍ଥାନରେ ଔ ହୁଏ ଏବଂ ସେହି ଔ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୧୧ । ଦଧି+ଆନୟ = ଦଧ୍ୟାନୟ, ନଦୀ+ଉଦକମ୍ = ନଦ୍ୟୁଦକମ୍ ।
ସାଧୁ+ଆଦେଶଃ = ସାଧ୍ୱାଦେଶଃ, ସାଧୁ+ଈ = ସାଧ୍ୱୀ ।
ପିତୃ+ଅନୁମତିଃ = ପିତ୍ରନୁମତିଃ, ଭ୍ରାତୃ+ଆଦେଶଃ = ଭ୍ରାତ୍ରାଦେଶଃ ।

ସୂତ୍ର – ଅନ୍ୟ (ଅସମାନ) ସ୍ୱରବର୍ଣ୍ଣ ପରେ ଥିଲେ ଇ ଓ ଈ ସ୍ଥାନରେ ଯ୍, ଉ ଓ ଊ ସ୍ଥାନରେ ବ୍ ଏବଂ ଋ ସ୍ଥାନରେ ର୍ ହୁଏ ଓ ସେହି ଯ୍, ବ୍ ଓ ର୍ ପର ସ୍ୱରବର୍ଣ୍ଣ ସହ ମିଶି ପୂର୍ବବର୍ଣ୍ଣରେ ଯୁକ୍ତ ହୁଅନ୍ତି ।

୧୨ । ନେ+ଅନମ୍ = ନୟନମ୍ । ନୈ+ଅକଃ = ନାୟକଃ ।
ଭୋ+ଅତି = ଭବତି । ପୌ+ଅକଃ = ପାବକଃ ।

ସୂତ୍ର—ସ୍ୱରବର୍ଣ୍ଣ ପରେ ଥିଲେ ଏ ସ୍ଥାନରେ ଅୟ୍, ଐ ସ୍ଥାନରେ ଆୟ୍, ଓ ସ୍ଥାନରେ ଅବ୍ ଏବଂ ଔ ସ୍ଥାନରେ ଆବ୍ ହୁଏ, ଅ ବା ଆ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ ଏବଂ ପରସ୍ୱର ଯ୍ ବା ବ୍ ସହ ଯୁକ୍ତ ହୁଏ ।

୧୩ । ତେ+ଆଗତାଃ = ତୟାଗତାଃ, ତ ଆଗତାଃ । ତସ୍ମୈ+ଇଦମ୍ = ତସ୍ମାୟିଦମ୍, ତସ୍ମା ଇଦମ୍ । ସାଧୋ+ଆଗଚ୍ଛ = ସାଧବାଗଚ୍ଛ, ସାଧ-
ଆଗଚ୍ଛ । ଗୁରୌ+ଉଚିତମ୍ = ଗୁରାବୁଚିତମ୍, ଗୁରା ଉଚିତମ୍ ।

ସୂତ୍ର – ସ୍ୱରବର୍ଣ୍ଣ ପରେ ଥିଲେ ପଦଶେଷରେ ଥିବା ଏ ପ୍ରଭୃତି ସ୍ଥାନରେ 'ପୂର୍ବ ସୂତ୍ର ଅନୁସାରେ ହେଉଥିବା ଅୟାଦିର ଯ୍ ଓ ବ୍ ର ବିକଳ୍ପେ ଲୋପ ହୁଏ ଓ ଲୋପ ପରେ ଆଉ ସନ୍ଧି ହୁଏ ନାହିଁ ।

୧୪ । ତେ+ଅତ୍ର = ତେଽତ୍ର । ଗୁରୋ+ଅତ୍ର = ଗୁରୋଽତ୍ର ।

ସୂତ୍ର—ପଦଶେଷରେ ଥିବା 'ଏ' ଏବଂ 'ଓ'ର ପରେ ଥିବା 'ଅ'ର ଲୋପ ହୋଇ ଖଣ୍ଡ ଅକାର (ଽ) ଚିହ୍ନ ରହେ ।

୧୫ । ମୁନୀ+ଇମୌ = ମୁନୀଇମୌ । ସାଧୂ+ଏତୌ = ସାଧୂଏତୌ ।
ଅମୂ+ଅଶ୍ୱୌ = ଅମୂଅଶ୍ୱୌ । ଲତେ+ଏତେ = ଲତେଏତେ ।
ଅମୀ+ଅଶ୍ୱାଃ = ଅମୀଅଶ୍ୱାଃ ।

ସୂତ୍ର – ଦ୍ୱିବଚନନିଷ୍ପନ୍ନ, ଈ, ଊ, ଏ ର ଏବଂ ଅଦସ୍ ଶବ୍ଦସମ୍ବନ୍ଧୀ ଅମୀର ସନ୍ଧି ହୁଏ ନାହିଁ ।

ପ୍ରଶ୍ନ

୧ । ବିଚ୍ଛେଦ କର:—ପର୍ଯ୍ୟାଲୋଚନା, ଶଶୀଚ, ଲୋକାପବାଦଃ, ବଧୂଦ୍ୟୁତଃ, ଶଙ୍କସ୍ୟୈବ, ହିପୂରଶଃ, ସାକ୍ଷ୍ୟ, ଶୟ୍ନନମ୍, ତାବପି ଓ ଗଜେନ୍ଦ୍ରଃ ।

୨ । ସନ୍ଧି କର: – ପର+ଈକ୍ଷା, ଆତ୍ମନ+ଅବଜ୍ଞା, ସୁ+ଆଗତମ୍, ନୈ+ଅକଃ, ତୌ+ଉଭୌ, ଅମୀ+ଋତବଃ ଓ କବୀ+ଏତୌ ।

---

## ବ୍ୟଞ୍ଜନସନ୍ଧି

ବ୍ୟଞ୍ଜନବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣର ବା ବ୍ୟଞ୍ଜନବର୍ଣ୍ଣ ଓ ସ୍ୱରବର୍ଣ୍ଣର ସନ୍ନିକର୍ଷରେ ଯେଉଁ ପରିବର୍ତ୍ତନ ଘଟେ, ତାହାକୁ ବ୍ୟଞ୍ଜନସନ୍ଧି କହନ୍ତି ।

୧ । ବାକ୍+ଈଶଃ = ବାଗୀଶଃ । ଦିକ୍+ଗଜଃ = ଦିଗ୍‌ଗଜଃ । ମହତ୍+ଧନମ୍ = ମହଦ୍ଧନମ୍ । ତତ୍+ଯାନମ୍ = ତଦ୍‌ଯାନମ୍ । ବାକ୍+ରୋଧଃ = ବାଗ୍ରୋଧଃ । ମହତ୍+ବନମ୍ = ମହଦ୍‌ବନମ୍ ।

ସୂତ୍ର – ସ୍ୱରବର୍ଣ୍ଣ, ବର୍ଗର ତୃତୀୟ ଓ ଚତୁର୍ଥ ବର୍ଣ୍ଣ ଏବଂ ଯ୍, ର୍, ଲ୍ ଓ ବ୍ ପରେ ଥିଲେ ପଦଶେଷରେ ଥିବା ବର୍ଗର ପ୍ରଥମବର୍ଣ୍ଣସ୍ଥାନରେ ସେହି ବର୍ଗର ତୃତୀୟ ବର୍ଣ୍ଣ ହୁଏ ।

୨ । ଉତ୍+ହତଃ = ଉଦ୍ଧତଃ । ସମ୍ପଦ୍+ହେତୋଃ = ସମ୍ପଦ୍ଧେତୋଃ ।
ତତ୍+ହି = ତଦ୍ଧି ।

ସୂତ୍ର— ପଦଶେଷରେ ଥିବା ତ୍ କିମ୍ବା ଦ୍ ପରେ ହ୍ ଥିଲେ ତ୍ ଓ ଦ୍ ସ୍ଥାନରେ ଦ୍ ଏବଂ ହ୍ ସ୍ଥାନରେ ଧ୍ ହୁଏ ଏବଂ ଦ୍ ଓ ଧ୍ ଉଭୟ ସ୍ଥାନରେ ଦ୍ଧ୍ ହୁଏ ।

୩ । ତତ୍ + ନୂନମ୍ = ତନ୍ନୂନମ୍ । ଅପ୍ + ମୟଃ = ଅମ୍ମୟଃ ।
ତଦ୍ + ମାତ୍ରମ୍ = ତନ୍ମାତ୍ରମ୍ ।

ସୂତ୍ର— ବର୍ଗର ପଞ୍ଚମ ବର୍ଣ୍ଣ ପରେ ଥିଲେ ପଦ ଶେଷରେ ଥିବା ବର୍ଗର ପ୍ରଥମ ଓ ତୃତୀୟ ବର୍ଣ୍ଣସ୍ଥାନରେ ସେହି ବର୍ଗର ପଞ୍ଚମ ବର୍ଣ୍ଣ ହୁଏ ।

୪ । ହସନ୍ + ଆଗତଃ = ହସନ୍ନାଗତଃ । ରାଜନ୍ + ଇହ = ରାଜନ୍ନିହ ।

ସୂତ୍ର— ସ୍ୱରବର୍ଣ୍ଣ ପରେ ଥିଲେ ହ୍ରସ୍ୱସ୍ୱରର ପରେ ଥିବା ନ୍ ସ୍ଥାନରେ ନ୍ନ୍ ହୁଏ; କିନ୍ତୁ 'ଭବାନ୍ + ଆଗତଃ = ଭବାନାଗତଃ' ଏଠାରେ ଦୀର୍ଘ ସ୍ୱର ପରେ 'ନ୍' ଥିବାରୁ ନ୍ନ୍ ହେଲା ନାହିଁ ।

୫ । କସ୍ମିନ୍ + ଚିତ୍ର = କସ୍ମିଂଶ୍ଚିତ୍ର । ଧାବନ୍ + ଛାଗଃ = ଧାବଂଶ୍ଛାଗଃ । ଭବାନ୍ + ତତ୍ର = ଭବାଂସ୍ତତ୍ର । ଅସନ୍ + ଥୁତ୍କାରଃ = ଅସଂସ୍ଥୁତ୍କାରଃ । ଉଦ୍ୟନ୍ + ଟଙ୍କାରଃ = ଉଦ୍ୟଂଷ୍ଟଙ୍କାରଃ । ମହାନ୍ + ଠକ୍କୁରଃ = ମହାଂଷ୍ଠକ୍କୁରଃ ।

ସୂତ୍ର— ନ୍ ପରେ ଚ୍ କିମ୍ବା ଛ୍ ଥିଲେ ଶ୍ ର ଆଗମ ହୁଏ, ତ୍ କିମ୍ବା ଥ୍ ଥିଲେ ସ୍ ର ଆଗମ ହୁଏ ଏବଂ ଟ୍ କିମ୍ବା ଠ୍ ଥିଲେ ଷ୍ ର ଆଗମ ହୁଏ ଓ ନ୍ ସ୍ଥାନରେ ଅନୁସ୍ୱାର ହୁଏ ।

୬ । ଉତ୍ + ସ୍ଥାନମ୍ = ଉତ୍ଥାନମ୍ । ଉତ୍ + ସ୍ତମ୍ଭନମ୍ = ଉତ୍ତମ୍ଭନମ୍ ।

ସୂତ୍ର— ଉତ୍ ଉପସର୍ଗର ପରେ ଥିବା ସ୍ଥା ଓ ସ୍ତମ୍ଭସମ୍ବନ୍ଧୀ ସ୍ ର ଲୋପ ହୁଏ ।

୭ । ତତ୍ + ଶ୍ରୁତ୍ୱା = ତଚ୍ଛ୍ରୁତ୍ୱା । ଏତଦ୍ + ଶକଟମ୍ = ଏତଚ୍ଛକଟମ୍ ।

ସୂତ୍ର— ପଦଶେଷରେ ଥିବା ତ୍ କିମ୍ବା ଦ୍ ପରେ ଶ୍ ଥିଲେ ତ୍ ଓ ଦ୍ ସ୍ଥାନରେ ଚ୍ ଓ ଶ୍ ସ୍ଥାନରେ ଛ୍ ହୁଏ ଏବଂ ଚ୍ ଓ ଛ୍ ଉଭୟ ସ୍ଥାନରେ ଚ୍ଛ୍ ହୁଏ ।

୮ । ଯାଚ୍ + ନା = ଯାଚ୍ଞା । ଯଜ୍ + ନଃ = ଯଜ୍ଞଃ ।

ସୂତ୍ର— ଚ ବର୍ଗବର୍ଣ୍ଣର ପରେ ଥିବା ନ୍ ସ୍ଥାନରେ ଞ୍ ହୁଏ ।

୯ । ଉତ୍ + ଲେଖଃ = ଉଲ୍ଲେଖଃ । ତଦ୍ + ଲୀଳା = ତଲ୍ଲୀଳା ।
ମହାନ୍ + ଲୋକଃ = ମହାଁଲ୍ଲୋକଃ । ବିଦ୍ୱାନ୍ + ଲିଖତି = ବିଦ୍ୱାଁଲ୍ଲିଖତି ।

ସୂତ୍ର—ଲ୍ ପରେ ଥିଲେ ତ ବର୍ଗସ୍ଥାନରେ ଲ୍ ହୁଏ; ମାତ୍ର ନ୍ ସ୍ଥାନରେ ଅନୁନାସିକ ଲ୍ ( ଁଲ୍ ) ହୁଏ । ‘ତୋଲିଁଲିଃ’

୧୦ । ତ୍ୱମ୍ + ତତ୍ର = ତ୍ୱଂ ତତ୍ର । ଶୀଘ୍ରମ୍ + ଯାତି = ଶୀଘ୍ରଂ ଯାତି ।

ସୂତ୍ର—ବ୍ୟଞ୍ଜନବର୍ଣ୍ଣ ପରେ ଥିଲେ ପଦାନ୍ତସ୍ଥିତ ମ୍ ସ୍ଥାନରେ ଅନୁସ୍ୱାର ହୁଏ ।

୧୧ । ତ୍ୱମ୍ + ଆଗଚ୍ଛ = ତ୍ୱମାଗଚ୍ଛ । ଅହମ୍ + ଅତ୍ର = ଅହମତ୍ର ।

ସୂତ୍ର – ସ୍ୱରବର୍ଣ୍ଣ ପରେ ଥିଲେ ପଦାନ୍ତସ୍ଥିତ ମ୍ ସ୍ଥାନରେ ଅନୁସ୍ୱାର ହୁଏ ନାହିଁ ।

### ପ୍ରଶ୍ନ

୧ । ବିଚ୍ଛେଦ କର: – ସ୍ୟାଦ୍ୟୁକ୍ତ୍ୟା । ତାବଦ୍‌ବ୍ୟୋମକୁଣ୍ଡାତ୍ । ଭଗବାଂଶ୍ଚନ୍ଦ୍ରଃ ।
ଅବନ୍ଧନମ୍ । ଜଗନ୍ନାତୁଃ । ମହାନଶ୍ୱଃ ।

୨ । ସନ୍ଧିକର: – ହୃତ୍ + ଶଯ୍ୟମ୍ । ଅପ୍ + ଧିଃ । ବାକ୍ + ମୀ । ଷଟ୍ + ନବତିଃ ।
ବାକ୍ + ମାଧୁର୍ଯ୍ୟ ।

---

## ବିସର୍ଗସନ୍ଧି

* ବିସର୍ଗ ଓ ସ୍ୱରବର୍ଣ୍ଣ କିମ୍ବା ବିସର୍ଗ ଓ ବ୍ୟଞ୍ଜନବର୍ଣ୍ଣର ସନ୍ନିକର୍ଷରେ ଯେଉଁ ପରିବର୍ତ୍ତନ ଘଟେ, ତାହାକୁ ବିସର୍ଗସନ୍ଧି କହନ୍ତି ।

୧ । ନିଃ + ଚୟଃ = ନିଶ୍ଚୟଃ । ଦୁଃ + ଛେଦ୍ୟଃ = ଦୁଶ୍ଛେଦ୍ୟଃ । ଦୁଃ + ତରଃ = ଦୁସ୍ତରଃ । ଦୁଃ + ଥୁତ୍କାରଃ = ଦୁସ୍ଥୁତ୍କାରଃ । ଧନୁଃ + ଟଙ୍କାରଃ = ଧନୁଷ୍ଟଙ୍କାରଃ । ବର୍ତ୍ତୁଳଃ + ଠକାରଃ = ବର୍ତ୍ତୁଳଷ୍ଠକାରଃ ।

ସୂତ୍ର – ଚ୍ ବା ଛ୍ ପରେ ଥିଲେ ବିସର୍ଗ ସ୍ଥାନରେ ଶ୍, ତ୍ ବା ଥ୍ ପରେ ଥିଲେ ବିସର୍ଗସ୍ଥାନରେ ସ୍ ଓ ଟ୍ ବା ଠ୍ ପରେ ଥିଲେ ବିସର୍ଗସ୍ଥାନରେ ଷ୍ ହୁଏ ।

---

* ସ୍ ଓ ର୍ ସ୍ଥାନରେ ବିସର୍ଗ ହୁଏ । ସ୍ ସ୍ଥାନୀୟ ବିସର୍ଗକୁ ସଜାତ ଓ ର୍ ସ୍ଥାନୀୟ ବିସର୍ଗକୁ ରଜାତ ବିସର୍ଗ କହନ୍ତି । ଯଥା: – ମନସ୍ = ମନଃ ‘ଃ’ ସଜାତ ଓ ପ୍ରାତର୍ = ପ୍ରାତଃ ‘ଃ’ ରଜାତ ।

୨ । ରାମଃ + ଅତ୍ର = ରାମୋଽତ୍ର । ସଃ + ଅପି = ସୋଽପି । ଏଷଃ + ଅନ୍ତ = ଏଷୋଽନ୍ତ ।

ସୂତ୍ର—ଅକାର ପରେ ଥିଲେ ଅକାରର ପରେ ଥିବା ସଜାତ ବିସର୍ଗ ଓ ଅକାର ଉଭୟସ୍ଥାନରେ ଓ ହୁଏ ଏବଂ ସେହି ଓ ପୂର୍ବ ବର୍ଣ୍ଣରେ ଯୁକ୍ତ ହୁଏ ଏବଂ ପରେ ଥିବା ଅକାରର ଲୋପ ହୋଇ ଽ ଚିହ୍ନ ରହେ ।

୩ । ଶ୍ୟାମଃ + ଗଚ୍ଛତି = ଶ୍ୟାମୋଗଚ୍ଛତି । ନବଃ + ଘଟଃ = ନବୋଘଟଃ । ରୁଗ୍‌ଣଃ + ନରଃ = ରୁଗ୍‌ଣୋନରଃ । ପ୍ରଭୂତଃ + ଯତ୍ନଃ = ପ୍ରଭୂତୋଯତ୍ନଃ । ମନଃ + ରଥଃ = ମନୋରଥଃ । ବୃଦ୍ଧଃ + ଲୋକଃ = ବୃଦ୍ଧୋଲୋକଃ । ଦୀର୍ଘଃ + ବାହୁଃ = ଦୀର୍ଘୋବାହୁଃ । ଶ୍ୱେତଃ + ହସ୍ତୀ = ଶ୍ୱେତୋହସ୍ତୀ ।

ସୂତ୍ର—ବର୍ଗର ତୃତୀୟ, ଚତୁର୍ଥ ଓ ପଞ୍ଚମ ବର୍ଣ୍ଣ ଏବଂ ଯ୍, ର୍, ଲ୍, ବ୍ ଓ ହ୍ ପରେ ଥିଲେ ଅକାର ଓ ତାହାପରେ ଥିବା ସଜାତ ବିସର୍ଗ ଉଭୟ ସ୍ଥାନରେ ଓ ହୁଏ ଏବଂ ସେହି ଓ ପୂର୍ବବର୍ଣ୍ଣରେ ଯୁକ୍ତ ହୁଏ ।

୪ । ସଃ + ଗଚ୍ଛତି = ସଗଚ୍ଛତି । ଏଷଃ + ବାଳକଃ = ଏଷବାଳକଃ । ସଃ + ଇନ୍ଦ୍ର = ସଇନ୍ଦ୍ର ।

ସୂତ୍ର—ଅ ବ୍ୟତୀତ ଯେ କୌଣସି ଅକ୍ଷର ପରେ ଥିଲେ ସ ଏବଂ ଏଷର ପରେ ଥିବା ବିସର୍ଗର ଲୋପ ହୁଏ ଏବଂ ଲୋପ ପରେ ଆଉ ସନ୍ଧି ହୁଏ ନାହିଁ ।

୫ । ତତଃ + ଆଗତଃ = ତତଆଗତଃ । ସୂର୍ଯ୍ୟଃ + ଉଦିତଃ = ସୂର୍ଯ୍ୟଉଦିତଃ ।

ସୂତ୍ର—ଅକାରଭିନ୍ନ ସ୍ୱରବର୍ଣ୍ଣ ପରେ ଥିଲେ ଅକାରର ପରେ ଥିବା ସଜାତ ବିସର୍ଗର ଲୋପ ହୁଏ ଏବଂ ଲୋପ ପରେ ଆଉ ସନ୍ଧି ହୁଏ ନାହିଁ ।

୬ । ନରାଃ + ଅତ୍ର = ନରାଅତ୍ର । ବାଳକାଃ + ଗତାଃ = ବାଳକାଗତାଃ । କୃଷ୍ଣାଃ + ଘନାଃ = କୃଷ୍ଣାଘନାଃ । ବୃଦ୍ଧାଃ + ମାତୁଳାଃ = ବୃଦ୍ଧାମାତୁଳାଃ । ଅଶ୍ୱାଃ + ଯାନ୍ତି = ଅଶ୍ୱାଯାନ୍ତି । ଉନ୍ନତାଃ + ରଥାଃ = ଉନ୍ନତାରଥାଃ । କୋମଳାଃ + ଲତାଃ = କୋମଳାଲତାଃ । ଦୁଷ୍ଟାଃ + ବ୍ୟାଧାଃ = ଦୁଷ୍ଟା-ବ୍ୟାଧାଃ । ବ୍ୟାଘ୍ରାଃ + ହତାଃ = ବ୍ୟାଘ୍ରାହତାଃ ।

ସୂତ୍ର—ସ୍ୱରବର୍ଣ୍ଣ, ବର୍ଗର ତୃତୀୟ, ଚତୁର୍ଥ ଓ ପଞ୍ଚମ ବର୍ଣ୍ଣ ଏବଂ ଯ୍, ର୍, ଲ୍, ବ୍ ଓ ହ୍ ପରେ ଥିଲେ ଆକାରର ପରେ ଥିବା ସଜାତବିସର୍ଗର ଲୋପ ହୁଏ ଏବଂ ଲୋପ ପରେ ଆଉ ସନ୍ଧି ହୁଏ ନାହିଁ ।

୭ । ଜବାଃ+ଅସ୍ତ୍ରମ୍ = ଜବାରସ୍ତ୍ରମ୍ । ମୁନିଃ+ଗଚ୍ଛନ୍ତି = ମୁନିର୍ଗଚ୍ଛନ୍ତି ।
ତରୋଃ+ଘର୍ଷଣାତ୍ = ତରୋର୍ଘର୍ଷଣାତ୍ । ପିତୁଃ+ମମ = ପିତୁର୍ମମ ।
ସାଧୁଃ+ଯାତି = ସାଧୁର୍ଯାତି । ଭ୍ରାତୁଃ+ଲେଭଃ = ଭ୍ରାତୁର୍ଲେଭଃ ।
ସିନ୍ଧୋଃ+ବାର = ସିନ୍ଧୋର୍ବାର । ପଶୋଃ+ହତ୍ୟା = ପଶୋର୍ହତ୍ୟା ।

ସୂତ୍ର—ସ୍ୱରବର୍ଣ୍ଣ, ବର୍ଗର ତୃତୀୟ, ଚତୁର୍ଥ ଓ ପଞ୍ଚମ ବର୍ଣ୍ଣ ଏବଂ ଯ୍, ଲ୍, ବ୍ ଓ ହ୍ ପରେ ଥିଲେ ଅ, ଆ ଭିନ୍ନ ସ୍ୱରବର୍ଣ୍ଣର ପରେ ଥିବା ବିସର୍ଗସ୍ଥାନରେ ର୍ ହୁଏ ।

୮ । ପୁନଃ+ଛନ୍ଦ = ପୁନଶ୍ଛନ୍ଦ । ପ୍ରାତଃ+ଗଚ୍ଛ = ପ୍ରାତର୍ଗଚ୍ଛ । ଦୁଃ+ଘଟନା = ଦୁର୍ଘଟନା । ଭ୍ରାତଃ+ମମ = ଭ୍ରାତର୍ମମ । ଅନ୍ତଃ+ଯାତି = ଅନ୍ତର୍ଯାତି । ପୁନ+ଲଭଃ = ପୁନର୍ଲଭ । ପ୍ରାତଃ+ବାୟୁ = ପ୍ରାତର୍ବାୟୁଃ । ପିତଃ+ଦେହି = ପିତର୍ଦେହି ।

ସୂତ୍ର – ସ୍ୱରବର୍ଣ୍ଣ, ବର୍ଗର ତୃତୀୟ, ଚତୁର୍ଥ ଓ ପଞ୍ଚମ ବର୍ଣ୍ଣ ଏବଂ ଯ୍, ଲ୍, ବ୍ ଓ ହ୍ ପରେ ଥିଲେ ର୍ ଜାତ ବିସର୍ଗସ୍ଥାନରେ ର୍ ହୁଏ ।

୯ । ନିଃ+ରସଃ = ନୀରସଃ । ପୁନଃ+ରମତେ = ପୁନାରମତେ । ସ୍ୱଃ+ରାଜ୍ୟମ୍ = ସ୍ୱାରାଜ୍ୟମ୍ । ହରିଃ+ରାଜତେ = ହରୀରାଜତେ ।

ସୂତ୍ର – ର୍ ପରେ ଥିଲେ ରଜାତ ବିସର୍ଗସ୍ଥାନରେ ଓ ଅ, ଆ ଭିନ୍ନ ସ୍ୱରବର୍ଣ୍ଣର ପରେ ଥିବା ବିସର୍ଗସ୍ଥାନରେ ହେଉଥିବା 'ର୍'ର ଲୋପ ହୁଏ ଏବଂ ତାହା ପୂର୍ବରେ ଥିବା ସ୍ୱର ଦୀର୍ଘ ହୁଏ ।

୧୦ । ରାମଃ+କରୋତି = ରାମଃକରୋତି । ହରିଃ+ଖେଳତି = ହରିଃଖେଳତି । କଃ+ପତତି = କଃପତତି । ଆମ୍ରଃ+ଫଳତି = ଆମ୍ରଃଫଳତି ।

ସୂତ୍ର—କ୍, ଖ୍, ପ୍, ଫ୍ ପରେ ଥିଲେ ପ୍ରାୟ ବିସର୍ଗର କୌଣସି ପରିବର୍ତ୍ତନ ହୁଏ ନାହିଁ ।

୧୧ । ଶ୍ରେୟଃ+କରଃ = ଶ୍ରେୟସ୍କରଃ । ଚତୁ+ପଥମ୍ = ଚତୁଷ୍ପଥମ୍ ଓ ନିଃ+ଫଳମ୍ = ନିଷ୍ଫଳମ୍ ଇତ୍ୟାଦି ।

ସୂତ୍ର—ସମାସ ହେଲେ କ୍, ଖ୍, ପ୍, ଫ୍ ପରେ ଥିଲେ ମଧ୍ୟ ବିସର୍ଗସ୍ଥାନରେ ସ୍ ହୁଏ ଓ ଉକ୍ତ ସ୍ ଷତ୍ୱବିଧି ଅନୁସାରେ ଷ୍ ହୁଏ ।

୧୨ । ସାଧୁଃ+ଶେତେ = ସାଧୁଃଶେତେ, ସାଧୁଶ୍ଶେତେ । ଗମ୍ଭୀରଃ+ସାଗରଃ = ଗମ୍ଭୀରଃସାଗରଃ, ଗମ୍ଭୀରସ୍ସାଗରଃ । ମଧୁଃ+ଷଷ୍ଠଃ = ମଧୁଃଷଷ୍ଠଃ, ମଧୁଷ୍ଷଷ୍ଠଃ ।

ସୂତ୍ର—ଶ୍, ସ୍ ଓ ଷ୍ ପରେ ଥିଲେ ବିକଳ୍ପେ ବିସର୍ଗର ପରିବର୍ତ୍ତନ ହୁଏ ଓ ପରିବର୍ତ୍ତନପକ୍ଷରେ ବିସର୍ଗସ୍ଥାନରେ ଯଥାକ୍ରମେ ଶ୍, ସ୍ ଓ ଷ୍ ହୁଏ ।

ସନ୍ଧିରେ ଅତିରିକ୍ତ—

ଗୋ+ଅକ୍ଷଃ = ଗବାକ୍ଷଃ । ଗୋ+ଇନ୍ଦ୍ରଃ = ଗବେନ୍ଦ୍ରଃ । କୁଳ+ଅଟା = କୁଳଟା । ମନସ୍+ଈଷା = ମନୀଷା । ସୀମନ୍+ଅନ୍ତଃ = ସୀମନ୍ତଃ । ଅବ+ଏହି = ଅବେହି । ଅକ୍ଷ+ଊହିନୀ = ଅକ୍ଷୌହିଣୀ । ପ୍ର+ଊଢ଼ଃ = ପ୍ରୌଢ଼ଃ । ପତତ୍+ଅଞ୍ଜଳିଃ = ପତଞ୍ଜଳିଃ । ପୁମ୍+କୋକିଳଃ = ପୁଂସ୍କୋକିଳଃ । ଷଟ୍+ନବତିଃ = ଷଣ୍ଣବତିଃ । ବିଦ୍ୱସ୍+ଜନଃ = ବିଦ୍ୱଜ୍ଜନଃ । ଦିବ୍+ଲୋକଃ = ଦ୍ୟୁଲୋକଃ । ପରି+କାରଃ = ପରିଷ୍କାରଃ । ପୁମ୍+ଚାତକଃ = ପୁଂଶ୍ଚାତକଃ । ବାଚଃ+ପତିଃ = ବାଚସ୍ପତିଃ । ବୃହତ୍+ପତିଃ = ବୃହସ୍ପତିଃ । ତତ୍+କରଃ = ତସ୍କରଃ । ଅହଃ+ପତିଃ = ଅହଃପତି, ଅହର୍ପତିଃ । ଅହଃ+ନିଶମ୍ = ଅହର୍ନିଶମ୍ । ଅହଃ+ଅହଃ = ଅହରହଃ । ଅହଃ+ରାତ୍ରଃ = ଅହୋରାତ୍ରଃ । ସ୍ୱଃ+ପତିଃ = ସ୍ୱର୍ପତିଃ । ଗୀଃ+ପତିଃ = ଗୀର୍ପତି, ଗୀଷ୍ପତିଃ ।

## ପ୍ରଶ୍ନ

୧ । ବିଚ୍ଛେଦ କର: — ଦ୍ୱାରେଷା । ଚତୁଷ୍ପଥମ୍ । ଦୁଷ୍କରମ୍ । ନୀରୋଗଃ । ଶମ୍ଭୂରାଜତେ । କୋଽପି । ଅତଏବ । ଶ୍ରୀରସୌ । ନମସ୍କାରଃ । ରାମଏଷଃ ।

୨ । ସନ୍ଧିକର:—ମାତୁଃ+ରାଜ୍ୟମ୍ । କୃଷ୍ଣାଃ+ଇମେ । ପ୍ରାତଃ+ରମ୍ୟମ୍ । କଃ+ବଦତି । ରବିଃ+ଉଦେତି । ବାଳକାଃ+କ୍ରୀଡ଼ନ୍ତି । ନାରଦଃ+ଉବାଚ ।

# ସମାସ

ସମ୍ବନ୍ଧବିଶିଷ୍ଟ ଦୁଇପଦ ବା ବହୁପଦ ମିଳି ଏକପଦ ହେବାକୁ ସମାସ କହନ୍ତି । ଯଥା: — ସୁନ୍ଦରଃ ବାଳକଃ — ସୁନ୍ଦରବାଳକଃ (ଦୁଇପଦର ମିଳନ) । ରାମଶ୍ଚ ଶ୍ୟାମଶ୍ଚ ଦାମଶ୍ଚ — ରାମଶ୍ୟାମଦାମାଃ (ବହୁପଦର ମିଳନ) ।

'ଏକପଦୀଭାବଃ ସମାସଃ'

ମିଳନ ପରେ ଯେଉଁ ପଦ ନିଷ୍ପନ୍ନ ହୁଏ, ତାହାକୁ ସମସ୍ତପଦ, ଯେଉଁ ଯେଉଁ ପଦମାନଙ୍କର ମିଳନ କରାଯାଏ, ସେମାନଙ୍କୁ ସମସ୍ୟମାନ ପଦ ଓ ଯେଉଁ ବାକ୍ୟ ସମସ୍ତ ପଦର ଅର୍ଥ ପ୍ରକାଶ କରେ, ତାହାକୁ ବ୍ୟାସବାକ୍ୟ ବା ବିଗ୍ରହବାକ୍ୟ କହନ୍ତି । ଯଥା: — 'ରାମଲକ୍ଷ୍ମଣୌ' (ସମସ୍ତପଦ), 'ରାମଃ' ଏବଂ 'ଲକ୍ଷ୍ମଣଃ' (ସମସ୍ୟମାନପଦ) ଓ ରାମଶ୍ଚ ଲକ୍ଷ୍ମଣଶ୍ଚ (ବିଗ୍ରହବାକ୍ୟ) ।

ସମସ୍ତପଦରେ ପ୍ରଥମେ ଥିବା ପଦକୁ ପୂର୍ବପଦ ଓ ପରେ ଥିବା ପଦକୁ ପରପଦ କହନ୍ତି । ଯଥା:—ରାମଲକ୍ଷ୍ମଣୌ (ରାମ ପୂର୍ବପଦ ଓ ଲକ୍ଷ୍ମଣ ପରପଦ) ।

ସମାସ ହେଲେ ସମସ୍ୟମାନପଦରୁ ବିଭକ୍ତି ଲୋପ କରାଯାଇ ସଙ୍ଗେ ସଙ୍ଗେ ସମସ୍ତପଦରୁ ଉତ୍ତର ପ୍ରଥମା ବିଭକ୍ତି ଯୋଗ କରାଯାଏ । ଏଣୁ ସମସ୍ତ-ପଦ ପ୍ରଥମା ବିଭକ୍ତିବ୍ୟତୀତ ଅନ୍ୟ ବିଭକ୍ତିରେ ଥିଲେ ସମାସର ନାମ ନିର୍ଦ୍ଦେଶ ପରେ ସମସ୍ତ ପଦର ଲିଙ୍ଗ, ବଚନ ଓ ବିଭକ୍ତି ଅନୁସାରେ ତଦ୍ ଶବ୍ଦ ବ୍ୟବହୃତ ହୁଏ । ଯଥା:—ରାମଗୃହାତ୍—ରାମସ୍ୟ ଗୃହମ୍ (ଷଷ୍ଠୀତତ୍ପୁରୁଷ) ତସ୍ମାତ୍ ।

କର୍ମଧାରୟ ଓ ବହୁବ୍ରୀହି ସମାସରେ ପୂର୍ବପଦରେ ଥିବା ମହତ୍ ଶବ୍ଦ ସ୍ଥାନରେ 'ମହା' ହୁଏ । ଯଥା — ମହାନ୍ ଦେବଃ—ମହାଦେବଃ (କର୍ମଧାରୟ) । ମହତ୍ ଧନଂ ଯସ୍ୟ ସଃ — ମହାଧନଃ (ବହୁବ୍ରୀହି) ।

କର୍ମଧାରୟ ଓ ବହୁବ୍ରୀହି ସମାସରେ ପୂର୍ବପଦରେ ଥିବା ଭାଷିତପୁଂସ୍କ (ତିନିଲିଙ୍ଗରେ ସମାନଅର୍ଥବିଶିଷ୍ଟ ଶବ୍ଦ) ସ୍ତ୍ରୀଲିଙ୍ଗ ବିଶେଷଣ ପୁଂଲିଙ୍ଗ ପରି ହୁଏ । ଯଥା:—ସୁନ୍ଦରୀ ମହିଳା — ସୁନ୍ଦରମହିଳା (କର୍ମଧାରୟ) । ସୁନ୍ଦରୀ ଭାର୍ଯ୍ୟା ଯସ୍ୟ ସଃ — ସୁନ୍ଦରଭାର୍ଯ୍ୟଃ (ବହୁବ୍ରୀହି) ।

ସମାସରେ ପୂର୍ବପଦର ଶେଷରେ ଥିବା ନ୍‌ର ଲୋପ ହୁଏ । ଯଥା:— ରାଜ୍ଞଃ ପୁରୁଷଃ—ରାଜପୁରୁଷଃ ।

*ସାଧାରଣତଃ ସମାସ ଛଅ ପ୍ରକାର । ଯଥା—ତତ୍‌ପୁରୁଷ, କର୍ମଧାରୟ, ଦ୍ୱିଗୁ, ଦ୍ୱନ୍ଦ୍ୱ, ବହୁବ୍ରୀହି ଓ ଅବ୍ୟୟୀଭାବ ।

## ତତ୍‌ପୁରୁଷ

ପ୍ରଥମା ଭିନ୍ନ ଦ୍ୱିତୀୟାପ୍ରଭୃତି ବିଭକ୍ତ୍ୟନ୍ତ ପଦ ସହ ପରପଦର ମିଳନରେ ତତ୍‌ପୁରୁଷ ସମାସ ହୁଏ । 'ଅମାଦୌ ତତ୍‌ପୁରୁଷଃ'

ତତ୍‌ପୁରୁଷ ସମାସରେ ପରପଦଅର୍ଥର ପ୍ରଧାନ୍ୟ ରହେ ଏବଂ ପରପଦର ଯେଉଁ ଲିଙ୍ଗ ସମସ୍ତପଦର ସେହି ଲିଙ୍ଗ ହୁଏ ।

ତତ୍‌ପୁରୁଷ ସମାସରେ ପୂର୍ବପଦ ଯେଉଁ ବିଭକ୍ତିଯୁକ୍ତ ହୋଇଥାଏ, ସମାସର ନାମ ସେହି ତତ୍‌ପୁରୁଷ ହୁଏ ।

୧ । ଦ୍ୱିତୀୟା ତତ୍‌ପୁରୁଷ:— କ୍ଳେଶଂ ଶ୍ରିତଃ – କ୍ଳେଶଶ୍ରିତଃ, ଦୁଃଖମ୍ ଅତୀତଃ—ଦୁଃଖାତୀତଃ, ଗ୍ରାମଂ ଗତଃ – ଗ୍ରାମଗତଃ; ଧନଂ ପ୍ରାପ୍ତଃ—ଧନପ୍ରାପ୍ତଃ, କୂପଂ ପତିତଃ—କୂପପତିତଃ, ବିପଦମ୍ ଆପନ୍ନଃ – ବିପଦାପନ୍ନଃ ଇତ୍ୟାଦି ।

ସୂତ୍ର – ଦ୍ୱିତୀୟାନ୍ତ ପଦର ଶ୍ରିତ ଓ ଅତୀତପ୍ରଭୃତି ସୁବନ୍ତପଦ ସହ ସମାସ ହୁଏ । 'ଦ୍ୱିତୀୟା ଶ୍ରିତାତୀତପତିତଗତାତ୍ୟସ୍ତପ୍ରାପ୍ତାପନ୍ନୈଃ'

ମୁହୂର୍ତ୍ତଂ ସୁଖମ୍—ମୁହୂର୍ତ୍ତସୁଖମ୍, ମାସଂ ଭୋଗ୍ୟଃ – ମାସଭୋଗ୍ୟଃ ।

ସୂତ୍ର—ବ୍ୟାପ୍ତି ବୁଝାଇଲେ କାଳବାଚକ ଦ୍ୱିତୀୟାନ୍ତପଦର ସୁବନ୍ତପଦ ସହ ସମାସ ହୁଏ । 'କାଳାତ୍ୟନ୍ତସଂଯୋଗେ'

୨ । ତୃତୀୟା ତତ୍‌ପୁରୁଷ:—ବର୍ଷେଣ ପୂର୍ବଃ—ବର୍ଷପୂର୍ବଃ, ପିତ୍ରା ସଦୃଶଃ – ପିତୃସଦୃଶଃ, ଏକେନ ଊନଃ – ଏକୋନଃ, ବାଗ୍ କଲହଃ – ବାକ୍‌କଲହଃ, କାର୍ଯେଣ ନିପୁଣଃ—କାର୍ଯନିପୁଣଃ, ଧାନ୍ୟେନ ମିଶ୍ରଃ—ଧାନ୍ୟମିଶ୍ରଃ, ବିଦ୍ୟୟା ଶ୍ଳକ୍ଷ୍ଣଃ (ଦୁର୍ବଳ)—ବିଦ୍ୟାଶ୍ଳକ୍ଷ୍ଣଃ ।

---

* କେତେକଙ୍କ ମତରେ ସମାସ ଚାରି ପ୍ରକାର । କର୍ମଧାରୟ ଓ ଦ୍ୱିଗୁ ତତ୍‌ପୁରୁଷର ଅନ୍ତର୍ଗତ ।

ସୂତ୍ର — ତୃତୀୟାନ୍ତ ପଦର ପୂର୍ବ ଓ ସଦୃଶ ପ୍ରଭୃତି ସୁବନ୍ତପଦ ସହ ସମାସ ହୁଏ । 'ତୃତୀୟାପୂର୍ବସଦୃଶସମୋନାର୍ଥକଲହନିପୁଣମିଶ୍ରଶ୍ଳକ୍ଷ୍ଣୈଃ'

ବ୍ୟାଧେନ ହତଃ – ବ୍ୟାଧହତଃ, କାରଣା ସିକ୍ତମ୍ — କାରସିକ୍ତମ୍ ।

ସୂତ୍ର — କର୍ତ୍ତା ଓ କରଣଠାରେ ହେଉଥିବା ତୃତୀୟାନ୍ତପଦର କୃତ୍ ପ୍ରତ୍ୟୟନିଷ୍ପନ୍ନ ସୁବନ୍ତପଦ ସହ ସମାସ ହୁଏ । 'କର୍ତ୍ତୃକରଣୟୋଃ କୃତା'

୩ । ଚତୁର୍ଥୀତତ୍ପୁରୁଷଃ — ଯୂପାୟ ଦାରୁ — ଯୂପଦାରୁ, ହାରାୟ ସୁବର୍ଣ୍ଣମ୍ — ହାରସୁବର୍ଣ୍ଣମ୍, ଭୂତାୟ ବଳିଃ — ଭୂତବଳିଃ, ଗୋଭ୍ୟଃ ହିତମ୍ — ଗୋହିତମ୍, ମାତ୍ରେ ସୁଖମ୍ — ମାତୃସୁଖମ୍, ଗବେ ରକ୍ଷିତମ୍ — ଗୋରକ୍ଷିତମ୍ ।

ସୂତ୍ର — ନିମିତ୍ତାର୍ଥରେ ହେଉଥିବା ଚତୁର୍ଥ୍ୟନ୍ତପଦର ସୁବନ୍ତ ପଦ ସହ ଏବଂ ଅର୍ଥ ଓ ବଳି ପ୍ରଭୃତି ସୁବନ୍ତପଦ ସହ ଚତୁର୍ଥ୍ୟନ୍ତ ପଦର ସମାସ ହୁଏ ।

'ଚତୁର୍ଥୀତଦର୍ଥାର୍ଥବଳିହିତସୁଖରକ୍ଷିତୈଃ'

୪ । ପଞ୍ଚମୀତତ୍ପୁରୁଷଃ — ଚୌରାତ୍ ଭୟମ୍ — ଚୌରଭୟମ୍, ବୃକ୍ଷାତ୍ ପତିତଃ — ବୃକ୍ଷପତିତଃ, ସୁଖାତ୍ ଅପେତଃ — ସୁଖାପେତଃ, ଜାଲାତ୍ ମୁକ୍ତଃ — ଜାଲମୁକ୍ତଃ, ଗୃହାତ୍ ଆଗତଃ — ଗୃହାଗତଃ ଇତ୍ୟାଦି ।

ସୂତ୍ର — ପଞ୍ଚମ୍ୟନ୍ତ ପଦର ଭୟାର୍ଥ ସୁବନ୍ତପଦ ତଥା ଅପେତ ପ୍ରଭୃତି ସୁବନ୍ତପଦ ସହ ସମାସ ହୁଏ । 'ପଞ୍ଚମୀଭୟାଦିଭିଃ'

୫ । ଷଷ୍ଠୀତତ୍ପୁରୁଷଃ — କୂପସ୍ୟ ଜଳମ୍ — କୂପଜଳମ୍, ଧନିନଃ ପୁତ୍ରଃ — ଧନିପୁତ୍ରଃ, ଗ୍ରାମସ୍ୟ ଗମନମ୍ — ଗ୍ରାମଗମନମ୍, ରାମସ୍ୟ ଶୟନମ୍ — ରାମଶୟନମ୍ ଇତ୍ୟାଦି ।

ସୂତ୍ର — ସମ୍ବନ୍ଧରେ ତଥା କୃତ୍ ପ୍ରତ୍ୟୟନିଷ୍ପନ୍ନ ପଦଯୋଗରେ ହେଉଥିବା ଷଷ୍ଠ୍ୟନ୍ତପଦର ସୁବନ୍ତପଦ ସହ ସମାସ ହୁଏ ।

୬ । ସପ୍ତମୀତତ୍ପୁରୁଷଃ — ଦାନେ ଶୌଣ୍ଡଃ — ଦାନଶୌଣ୍ଡଃ, ଯୁଦ୍ଧେ ପ୍ରବୀଣଃ — ଯୁଦ୍ଧପ୍ରବୀଣଃ, ଅଗ୍ନୌ ସିଦ୍ଧଃ — ଅଗ୍ନିସିଦ୍ଧଃ, ଆତପେ ଶୁଷ୍କଃ — ଆତପଶୁଷ୍କଃ, ଜଳେ ମଗ୍ନଃ — ଜଳମଗ୍ନଃ ଇତ୍ୟାଦି ।

ସୂତ୍ର — ସପ୍ତମ୍ୟନ୍ତ ପଦର ଶୌଣ୍ଡ, ପ୍ରବୀଣ ଓ ସିଦ୍ଧ ପ୍ରଭୃତି ସୁବନ୍ତପଦ ସହ ସମାସ ହୁଏ । 'ସପ୍ତମୀଶୌଣ୍ଡାଦିଭିଃ'

୭ । ଏକଦେଶୀ ତତ୍ପୁରୁଷଃ—ପୂର୍ବମ୍ ଅହ୍ନଃ—ପୂର୍ବାହ୍ନଃ, ପୂର୍ବଂ ରାତ୍ରେଃ—ପୂର୍ବରାତ୍ରଃ, ମଧ୍ୟମ୍ ଅହ୍ନଃ—ମଧ୍ୟାହ୍ନଃ, ପୂର୍ବଂ କାୟସ୍ୟ—ପୂର୍ବକାୟଃ, ଅପରଂ କାୟସ୍ୟ—ଅପରକାୟଃ ଇତ୍ୟାଦି ।

ସୂତ୍ର—ଷଷ୍ଠୀବିଭକ୍ତ୍ୟାନ୍ତ ଏକବଚନାନ୍ତ ଅବୟବୀ ସହ ପୂର୍ବ, ଅପର, ଅଧର ଓ ଉତ୍ତର ପ୍ରଭୃତି ଏକଦେଶବାଚକ ପଦର ସମାସ ହୁଏ ଏବଂ 'ଅହନ୍' ସ୍ଥାନରେ ଅହ୍ନ ଓ 'ରାତ୍ରି' ସ୍ଥାନରେ ରାତ୍ର ହୁଏ ଏବଂ ସମସ୍ତପଦ ପୁଂଲିଙ୍ଗ ହୁଏ ।

'ପୂର୍ବାପରେକଦେଶିନୈକବଚନେ'

୮ । ପ୍ରାଦିତତ୍ପୁରୁଷଃ—ଅତିକ୍ରାନ୍ତଃ ମାଲାମ୍—ଅତିମାଲଃ, ଅଧିଗତଂ ଜ୍ୟାମ୍—ଅଧିଜ୍ୟମ୍, ପରିଗ୍ଲାନଃ ସେବାୟୈ—ପରିସେବଃ । ଉତ୍କ୍ରାନ୍ତଃ ନିଦ୍ରାୟାଃ—ଉନ୍ନିଦ୍ରଃ ଇତ୍ୟାଦି ।

ସୂତ୍ର—ନାନାବିଧ ଅର୍ଥରେ ଦ୍ୱିତୀୟାଦି ବିଭକ୍ତ୍ୟନ୍ତପଦର କେତେକ ଉପସର୍ଗ ସହ ସମାସ ହୁଏ ଓ ଅନ୍ତସ୍ଥିତ ସ୍ତ୍ରୀଲିଙ୍ଗ ପୁଂଲିଙ୍ଗ ପର ହୁଏ ।

'ପ୍ରାଦୀନାମର୍ଥବିଶେଷେ'

୯ । ଉପପଦତତ୍ପୁରୁଷଃ—କୁମ୍ଭଂ କରୋତି ଯଃ ସଃ—କୁମ୍ଭକାରଃ (କୁମ୍ଭ+କୃ+ଅ) । ସେହିପରି ନିଶାଚରଃ, ଦିବାକରଃ, ଜଳଚରଃ, ପଙ୍କଜମ୍ ଇତ୍ୟାଦି ।

ସୂତ୍ର—କୃତ୍ ପ୍ରତ୍ୟୟଯୁକ୍ତ ଧାତୁର * ଉପପଦ ସହ ସମାସ ହୁଏ ।

'ଉପପଦମତିଙ୍'

୧୦ । ନଞ୍ତତ୍ପୁରୁଷଃ—ନ ପ୍ରିୟଃ—ଅପ୍ରିୟଃ, ନ ଉକ୍ତଃ—ଅନୁକ୍ତଃ, ନ କିଂସ୍ୱା—ଅକିଂସ୍ୱା, ନ ଅଲମ୍—ଅନଲମ୍ ଇତ୍ୟାଦି ।

ସୂତ୍ର—ସୁବନ୍ତପଦ ସହ ନଞ୍ର ସମାସ ହୁଏ ଓ ବ୍ୟଞ୍ଜନବର୍ଣ୍ଣ ପରେ ଥିଲେ ନଞ୍ ସ୍ଥାନରେ ଅ ଏବଂ ସ୍ୱରବର୍ଣ୍ଣ ପରେ ଥିଲେ ନଞ୍ ସ୍ଥାନରେ ଅନ୍ ହୁଏ । 'ନଞ୍ ସୁପା'

---

* ଉପସର୍ଗବ୍ୟତୀତ ଯେଉଁସବୁ ପଦ ଧାତୁପୂର୍ବରେ ଥାଇ ଧାତୁରୁ ଉତ୍ତର କୃତ୍ ପ୍ରତ୍ୟୟ କରାଯାଏ, ସେହି ପଦମାନଙ୍କୁ ଉପପଦ କହନ୍ତି ।

ତତ୍ପୁରୁଷ ସମାସରେ ସାଧାରଣ ନିୟମର ବହିର୍ଭୂତ:—

ପଞ୍ଚମୀତତ୍ପୁରୁଷରେ:—ଶତାତ୍ ପରେ – ପରଶତାଃ । ଷଷ୍ଠୀତତ୍-ପୁରୁଷରେ:—ବୃହତାଂ ପତିଃ—ବୃହସ୍ପତିଃ, ବନସ୍ୟ ପତିଃ – ବନସ୍ପତିଃ, ବାଣାନାଂ ବାହକଃ—ବଲାହକଃ, କାଲ୍ୟାଃ ଦାସଃ – କାଳିଦାସଃ, ବିଶ୍ୱସ୍ୟ ମିତ୍ରମ୍ – ବିଶ୍ୱାମିତ୍ରଃ, ଦନ୍ତାନାଂ ରାଜା— ରାଜଦନ୍ତଃ, ଶବାନାଂ ଶୟନମ୍— ଶ୍ମଶାନମ୍, ଗବାମ ଅକ୍ଷି ଇବ—ଗବାକ୍ଷଃ, ଶୁନଃ ଦନ୍ତଃ—ଶ୍ୱାଦନ୍ତଃ । ସପ୍ତମୀତତ୍ପୁରୁଷରେ: – ଗୋଷ୍ଠେ ଶ୍ୱା – ଗୋଷ୍ଠଶ୍ୱଃ, ଅଷ୍ଟାସୁ ବକ୍ରଃ – ଅଷ୍ଟାବକ୍ରଃ । ନଞ୍ତତ୍ପୁରୁଷରେ:—ନ ମିତ୍ରମ୍ – ଅମିତ୍ରଃ ।

## କର୍ମଧାରୟ

ବିଭିନ୍ନ ଅର୍ଥ ପ୍ରକାଶ କରୁଥିବା ଦୁଇଟି ପଦ ଯଦି ଗୋଟିଏ ପଦାର୍ଥକୁ ବୁଝାଏ, ତେବେ କର୍ମଧାରୟ ସମାସ ହୁଏ । 'କର୍ମଧାରୟସ୍ତୁଲ୍ୟାର୍ଥେ'

୧ । ବିଶେଷ୍ୟ ବିଶେଷଣରେ କର୍ମଧାରୟ:—ନୀଳମ୍ ଉତ୍ପଳମ୍— ନୀଳୋତ୍ପଳମ୍, ସନ୍ତଃ ଜନାଃ—ସଜ୍ଜନାଃ, ମହାନ୍ ବାହୁଃ – ମହାବାହୁଃ, ମହତୀ ନବମୀ – ମହାନବମୀ, ମହତ୍ ଧନମ୍—ମହାଧନମ୍ ('ମହତ୍'ସ୍ଥାନରେ ମହା ହେଲା),ସୁନ୍ଦରୀ ବାଳିକା—ସୁନ୍ଦରବାଳିକା, ଶୁକ୍ଳା ପଞ୍ଚମୀ—ଶୁକ୍ଳପଞ୍ଚମୀ (ସ୍ତ୍ରୀ ଲିଙ୍ଗ ବିଶେଷଣ ପୁଂଲିଙ୍ଗ ପରି ହେଲା) ।

ସୂତ୍ର – ବିଶେଷ୍ୟପଦ ସହ ବିଶେଷଣପଦର ସମାସ ହୁଏ ।

'ବିଶେଷଣଂ ବିଶେଷ୍ୟେଣ'

୨ । ବିଶେଷଣ-ବିଶେଷଣରେ କର୍ମଧାରୟ:—ପରମଃ ଧାର୍ମିକଃ— ପରମଧାର୍ମିକଃ, ଶ୍ୟାମଃ କାନ୍ତଃ – ଶ୍ୟାମକାନ୍ତଃ, ପୂର୍ବଂ ସ୍ନାତଃ ପଶ୍ଚାତ୍ ଅନୁଲିପ୍ତଃ – ସ୍ନାତାନୁଲିପ୍ତଃ, ପୂର୍ବଂ ଯାତଃ ପଶ୍ଚାତ୍ ଆୟାତଃ – ଯାତାୟାତଃ ଇତ୍ୟାଦି ।

ସୂତ୍ର – ସାଧାରଣ ବିଶେଷଣ ପଦ ଦୁଇଟିର ତଥା ପୂର୍ବ ଓ ପରକାଳ-ବୋଧକ କ୍ତ ପ୍ରତ୍ୟୟାନ୍ତ ବିଶେଷଣ ପଦ ଦୁଇଟିର ସମାସ ହୁଏ ।

୩ । ଉପମାନ କର୍ମଧାରୟ :—ଘନ ଇବ ଶ୍ୟାମଃ—ଘନଶ୍ୟାମଃ, ଅର୍ଣ୍ଣବ ଇବ ଗମ୍ଭୀରଃ – ଅର୍ଣ୍ଣବଗମ୍ଭୀରଃ ଇତ୍ୟାଦି । ଏଠାରେ 'ଘନ' ଓ 'ଅର୍ଣ୍ଣବ' ଉପମାନ ଏବଂ 'ଶ୍ୟାମ' ଓ 'ଗମ୍ଭୀର' ସାଧାରଣଧର୍ମ ।

ସୂତ୍ର—ସାଧାରଣଧର୍ମବାଚକ ପଦ ସହ ଉପମାନବାଚକ ପଦର ସମାସ ହୁଏ । "ଉପମାନାନି ସାମାନ୍ୟବଚନୈଃ'

୪ । ଉପମିତକର୍ମଧାରୟ :—ପୁରୁଷଃ ବ୍ୟାଘ୍ର ଇବ—ପୁରୁଷବ୍ୟାଘ୍ରଃ, ରାଜା ଚନ୍ଦ୍ର ଇବ – ରାଜଚନ୍ଦ୍ରଃ, ମୁନିଃ ପୁଙ୍ଗବ ଇବ – ମୁନିପୁଙ୍ଗବଃ ଇତ୍ୟାଦି ।

ସୂତ୍ର—ସାଧାରଣଧର୍ମର ପ୍ରୟୋଗ ନ ଥାଇ ବ୍ୟାଘ୍ର, ସିଂହ, ଚନ୍ଦ୍ର, ପୁଙ୍ଗବ ଓ ଋଷଭ ପ୍ରଭୃତି ଉପମାନବାଚକ ପଦ ସହ ଉପମେୟବାଚକ ପଦର ସାଦୃଶ୍ୟପ୍ରତୀତିପୂର୍ବକ ସମାସ ହୁଏ ।

'ଉପମିତଂ ବ୍ୟାଘ୍ରାଦିଭିଃ ସାମାନ୍ୟାପ୍ରୟୋଗେ'

୫ । ରୂପକକର୍ମଧାରୟ : – ଶୋକ ଏବ ସାଗରଃ – ଶୋକସାଗରଃ, ବିଦ୍ୟା ଏବ ରତ୍ନମ୍ – ବିଦ୍ୟାରତ୍ନମ୍, ବିଦ୍ୟା ଏବ ଧନମ୍—ବିଦ୍ୟାଧନମ୍ ଇତ୍ୟାଦି ।

ସୂତ୍ର—ଉପମାନବାଚକ ପଦ ସହ ଉପମେୟବାଚକ ପଦର ଅଭେଦ-ପ୍ରତୀତିପୂର୍ବକ ସମାସ ହୁଏ ।

'ଉପମାନୋପମେୟୟୋରଭେଦେରୂପକମ୍'

୬ । ମଧ୍ୟପଦଲୋପୀ କର୍ମଧାରୟ :— ଶାକପ୍ରିୟଃ ପାର୍ଥିବଃ – ଶାକପାର୍ଥିବଃ, ଶାଲ୍ମଲୀନାମା ତରୁଃ – ଶାଲ୍ମଲୀତରୁଃ, ଦେବପୂଜକଃ ବ୍ରାହ୍ମଣଃ—ଦେବବ୍ରାହ୍ମଣଃ, ଚନ୍ଦ୍ରସଦୃଶଂ ମୁଖମ୍ – ଚନ୍ଦ୍ରମୁଖମ୍, ଏକାଧିକାଃ ଦଶ – ଏକାଦଶ, ଦ୍ୱ୍ୟଧିକା ବିଂଶତିଃ—ଦ୍ୱାବିଂଶତିଃ, ଅଷ୍ଟାଧିକାଃ ଦଶ – ଅଷ୍ଟାଦଶ ଇତ୍ୟାଦି ।

---

* ଯାହା ସହିତ ଉପମା ଦିଆଯାଏ, ତାହାକୁ ଉପମାନ, ଯାହାକୁ ଉପମା ଦିଆଯାଏ, ତାହାକୁ ଉପମେୟ ଏବଂ ଯେଉଁ ଗୁଣ ଉପମାନ ଓ ଉପମେୟ ଉଭୟଠାରେ ଥାଏ, ତାହାକୁ ସାମାନ୍ୟବଚନ (ସାଧାରଣଧର୍ମ) କହନ୍ତି ।

ସୂତ୍ର—ସ୍ଥାନେ ସ୍ଥାନେ ମଧ୍ୟପଦର ଲୋପ ହୋଇ ସମାସ ହୁଏ ଏବଂ ଦଶନ୍ ଶବ୍ଦ ପରେ ଥିଲେ ଏକ ସ୍ଥାନରେ ଏକା ଓ ସଂଖ୍ୟାବାଚକ ଶବ୍ଦ ପରେ ଥିଲେ ଦ୍ୱି ସ୍ଥାନରେ ଦ୍ୱା ଓ ଅଷ୍ଟନ୍ ସ୍ଥାନରେ ଅଷ୍ଟା ହୁଏ ।

'ଲୋପଃ କ୍ୱଚିତ୍ ମଧ୍ୟସ୍ୟ'

କର୍ମଧାରୟସମାସରେ ଅତିରିକ୍ତ:—

କୁ (କୁତ୍ସିତଃ) ଅଶ୍ୱଃ—କଦଶ୍ୱଃ, କୁତ୍ସିତମ୍ ଉଦକମ୍—କଦୁଦକମ୍, କୁତ୍ସିତଃ ଆକାରଃ – କଦାକାରଃ,କୁତ୍ସିତମ୍ ଅନ୍ନମ୍ – କଦନ୍ନମ୍(ସ୍ୱରବର୍ଣ୍ଣ ପରେ ଥିଲେ 'କୁ' ସ୍ଥାନରେ କତ୍ ହୁଏ) । କୁତ୍ସିତଃ ପୁରୁଷଃ—କୁପୁରୁଷଃ,କାପୁରୁଷଃ (ପୁରୁଷ ଶବ୍ଦ ପରେ ଥିଲେ 'କୁ' ସ୍ଥାନରେ ବିକଳ୍ପରେ 'କା'ହୁଏ) । କୁ(ଈଷତ୍) ଉଷ୍ଣମ୍—କବୋଷ୍ଣମ୍, କୋଷ୍ଣମ୍, କଦୁଷ୍ଣମ୍ (ଉଷ୍ଣ ଶବ୍ଦ ପରେ ଥିଲେ 'କୁ' ସ୍ଥାନରେ କବ, କା ଓ କତ୍ ହୁଏ) । ମୂର୍ଖଃ ବଜ୍ରଃ—ବଜ୍ରମୂର୍ଖଃ (କେତେକ ସ୍ଥାନରେ ବିଶେଷଣ ପଦ ପରେ ବସେ) ।

କର୍ମଧାରୟସମାସରେ ସାଧାରଣନିୟମର ବହିର୍ଭୂତ (ମୟୂରବ୍ୟଂସକାଦି):—

ମୟୂରଃ ବ୍ୟଂସକଃ – ମୟୂରବ୍ୟଂସକଃ, ଅନ୍ୟଃ ରାଜା—ରାଜାନ୍ତରମ୍, ଅନ୍ୟା କ୍ରିୟା—କ୍ରିୟାନ୍ତରମ୍, ଯା ଇଚ୍ଛା – ଯଦୃଚ୍ଛା, ନାସ୍ତି କିଞ୍ଚନ ଯସ୍ୟ—ଅକିଞ୍ଚନଃ, ବର୍ଣ୍ଣ ଏବ – ବର୍ଣ୍ଣମାତ୍ରମ୍, ଉଦକ୍ ଚ ଅବାକ୍ ଚ – ଉଚ୍ଚାବଚମ୍, ନାସ୍ତି କୁତୋଽପି ଭୟଂ ଯସ୍ୟ ସଃ – ଅକୁତୋଭୟଃ ।

## ଦ୍ୱିଗୁ

ସଂଖ୍ୟାବାଚକ ଶବ୍ଦ ପୂର୍ବରେ ଥାଇ ତଦ୍ଧିତାର୍ଥ, ଉତ୍ତରପଦପର ଓ ସମାହାର ଅର୍ଥରେ ଯେଉଁ ସମାସ ହୁଏ, ତାହାକୁ ଦ୍ୱିଗୁସମାସ କହନ୍ତି । ଏହି ସମାସ ତିନି ପ୍ରକାର । ଯଥା – ତଦ୍ଧିତାର୍ଥ, ଉତ୍ତରପଦପର ଓ ସମାହାର ।

'ସଂଖ୍ୟାପୂର୍ବୋଦ୍ୱିଗୁଃ'

୧ । ତଦ୍ଧିତାର୍ଥ:—ପଞ୍ଚଭିଃ ଗୋଭିଃ କ୍ରୀତଃ – ପଞ୍ଚଗୁଃ । ଏହିପରି ସପ୍ତଗୁଃ, ନବଗୁଃ, ଦଶଗୁଃ, ଦ୍ୱିଗୁଃ ଇତ୍ୟାଦି ।

ସୂତ୍ର—ଗୋ ଶବ୍ଦର ଅର୍ଥ 'ଗୋରୁ' ନ ହେଲେ 'ଓ' ର ହ୍ରସ୍ୱ ହୁଏ, ଅର୍ଥାତ୍ ଗୋ ସ୍ଥାନରେ 'ଗୁ' ହୁଏ । 'ଗୋଃ'

୨ । ଉତ୍ତରପଦପର ଦ୍ୱିଗୁ:—ତ୍ରୟାଣାଂ ଲୋକାନାଂ ନାଥଃ—ତ୍ରିଲୋକନାଥଃ, ପଞ୍ଚ ଗାବଃ ଧନମ୍ ଅସ୍ୟ – ପଞ୍ଚଗବଧନଃ, ସପ୍ତ ହସ୍ତାଃ ପ୍ରମାଣମ୍ ଅସ୍ୟ – ସପ୍ତହସ୍ତପ୍ରମାଣଃ ଇତ୍ୟାଦି ।

୩ । ସମାହାର ଦ୍ୱିଗୁ:—(କ) ତ୍ରୟାଣାଂ ଲୋକାନାଂ ସମାହାରଃ—ତ୍ରିଲୋକୀ, ଦଶାନାଂ ଗ୍ରାମାଣାଂ ସମାହାରଃ – ଦଶଗ୍ରାମୀ । ଏହିପରି ଚତୁଷ୍ପଦୀ, ପଞ୍ଚବଟୀ, ସପ୍ତଶତୀ ଓ ଦଶରଥୀ ଇତ୍ୟାଦି ।

ସୂତ୍ର—ସମାହାରଦ୍ୱିଗୁ ସମାସରେ ଅକାରାନ୍ତ ଶବ୍ଦରୁ ଉତ୍ତର ଙୀପ୍(ଈ) ପ୍ରତ୍ୟୟ ହୁଏ ଓ ସମସ୍ତପଦ ସ୍ତ୍ରୀଲିଙ୍ଗ ଓ ଏକବଚନାନ୍ତ ହୁଏ ।

'ଅଦନ୍ତାତ୍ ଙୀପ୍ ସମାହାରେ'

(କ) ତ୍ରୟାଣାଂ ଭୁବନାନାଂ ସମାହାରଃ – ତ୍ରିଭୁବନମ୍, ପଞ୍ଚାନାଂ ଗବାଂ ସମାହାରଃ—ପଞ୍ଚଗବମ୍ । ଏହିପରି ଚତୁର୍ଯୁଗମ୍, ଦ୍ୱିନାବମ୍ ଓ ପଞ୍ଚପାତ୍ରମ୍ ଇତ୍ୟାଦି ।

ସୂତ୍ର – ସମାହାରଦ୍ୱିଗୁ ସମାସରେ ଭୁବନପ୍ରଭୃତି କେତେକ ଶବ୍ଦରୁ ଉତ୍ତର ଙୀପ୍ ପ୍ରତ୍ୟୟ ହୁଏ ନାହିଁ ଏବଂ ଏହି ସବୁ ସ୍ଥଳରେ ସମସ୍ତପଦ କ୍ଲୀବଲିଙ୍ଗ ଓ ଏକବଚନାନ୍ତ ହୁଏ । 'ନ ଭୁବନାଦେଃ'

## ଦ୍ୱନ୍ଦ୍ୱ

ଦୁଇ ବା ବହୁ ବିଶେଷ୍ୟପଦର ପରସ୍ପର ମିଳନରେ ଦ୍ୱନ୍ଦ୍ୱ ସମାସ ହୁଏ । ଏହି ସମାସରେ ବିଗ୍ରହବାକ୍ୟର ପ୍ରତ୍ୟେକ ପଦପରେ 'ଚ'ପ୍ରୟୋଗ କରାଯାଏ ।

'ଚାର୍ଥେ ଦ୍ୱନ୍ଦ୍ୱଃ'

ଦ୍ୱନ୍ଦ୍ୱସମାସରେ ସବୁପଦର ପ୍ରାଧାନ୍ୟ ଥାଏ ।

'ଉଭୟପଦାର୍ଥପ୍ରଧାନୋ ଦ୍ୱନ୍ଦ୍ୱଃ'

ଦ୍ୱନ୍ଦ୍ୱସମାସ ଦୁଇପ୍ରକାର । ଯଥା: – ଇତରେତର ଓ ସମାହାର ।

୧ । ଇତରେତରଦ୍ୱନ୍ଦ୍ୱ:—(କ) ରାମଶ୍ଚ ଲକ୍ଷ୍ମଣଶ୍ଚ – ରାମଲକ୍ଷ୍ମଣୌ, ବୃକ୍ଷଶ୍ଚ ଲତା ଚ – ବୃକ୍ଷଲତେ, ପତ୍ରଞ୍ଚ ପୁଷ୍ପଞ୍ଚ ଫଳଞ୍ଚ – ପତ୍ରପୁଷ୍ପଫଳାନି ଇତ୍ୟାଦି ।

ସୂତ୍ର—ଦ୍ୱନ୍ଦ୍ୱସମାସରେ ଦୁଇ ବା ତତୋଽଧିକ ଅଧିକ ପଦ ମିଳିତ ହୋଇ ଅନ୍ୱିତ ହୁଏ ଏବଂ ପରପଦ ଅନୁସାରେ ସମସ୍ତପଦର ଲିଙ୍ଗ ସ୍ଥିର କରାଯାଏ।

'ମିଳିତାନାମନ୍ୱୟ ଇତରେତରଃ'

(ଖ) ହଂସଶ୍ଚ ସାରସଶ୍ଚ—ହଂସସାରସୌ । ଏହିପରି ଅଶ୍ୱରଥୌ, ହରିହରୌ, ଶମ୍ଭୁକୃଷ୍ଣୌ, ଗୁରୁଶିଷ୍ୟୌ, କୁଶକାଶୌ, ହେମନ୍ତଶିଶିରୌ, ଶିଶିରବସନ୍ତୌ, ଅଶ୍ୱମହିଷୀଭରଣୀ ଇତ୍ୟାଦି ।

ସୂତ୍ର—ଦ୍ୱନ୍ଦ୍ୱସମାସରେ ଅଳ୍ପସ୍ୱରବିଶିଷ୍ଟ, ସ୍ୱରାଦି ଅକାରାନ୍ତ, ଇକାରାନ୍ତ, ଉକାରାନ୍ତ, ଗୌରବବୋଧକ ତଥା ହ୍ରସ୍ୱସ୍ୱରବିଶିଷ୍ଟ ପଦ ପ୍ରାୟ ପୂର୍ବରେ ବସେ ଏବଂ ଋତୁ ଓ ନକ୍ଷତ୍ରବାଚକ ପଦ କ୍ରମଅନୁସାରେ ପୂର୍ବରେ ବସେ ।

(ଗ) ହୋତା ଚ ପୋତା ଚ—ହୋତାପୋତାରୌ (ବିଦ୍ୟାସମ୍ବନ୍ଧ) । ମାତା ଚ ପିତା ଚ—ମାତାପିତରୌ, ପିତା ଚ ପୁତ୍ରଶ୍ଚ—ପିତାପୁତ୍ରୌ (ଗୋତ୍ରସମ୍ବନ୍ଧ) ।

ସୂତ୍ର—ବିଦ୍ୟା ବା ଗୋତ୍ରସମ୍ବନ୍ଧ ଥାଇ ଋକାରାନ୍ତ ଶବ୍ଦ ବା ପୁତ୍ର ଶବ୍ଦ ପରପଦରେ ଥିଲେ ପୂର୍ବପଦର ଶେଷରେ ଥିବା 'ଋ' ସ୍ଥାନରେ 'ଆ' ହୁଏ ।

'ଆନଙ୍ ଋତୋଦ୍ୱନ୍ଦ୍ୱେ ପୁତ୍ରେ ଚ'

(ମାତ୍ର) ଦାତା ଚ ଭୋକ୍ତା ଚ—ଦାତୃଭୋକ୍ତାରୌ, ଜାମାତା ଚ ପୁତ୍ରଶ୍ଚ—ଜାମାତୃପୁତ୍ରୌ । ଏଠାରେ ବିଦ୍ୟା କିମ୍ବା ଗୋତ୍ରସମ୍ବନ୍ଧ ନ ଥିବାରୁ 'ଋ' ସ୍ଥାନରେ 'ଆ' ହେଲା ନାହିଁ ।

(ଘ) ଇନ୍ଦ୍ରଶ୍ଚ ବରୁଣଶ୍ଚ—ଇନ୍ଦ୍ରାବରୁଣୌ । ଏହିପରି ସୂର୍ଯ୍ୟାଚନ୍ଦ୍ରମସୌ, ଅଗ୍ନାମରୁତୌ ଇତ୍ୟାଦି ।

ସୂତ୍ର—ଦେବତାବାଚକଶବ୍ଦର ଦ୍ୱନ୍ଦ୍ୱସମାସରେ ପୂର୍ବପଦର ଶେଷସ୍ୱର-ସ୍ଥାନରେ 'ଆ' ହୁଏ । 'ଦେବତାଦ୍ୱନ୍ଦ୍ୱେ ଚ'

(ଙ) ବ୍ରହ୍ମା ଚ ପ୍ରଜାପତିଶ୍ଚ—ବ୍ରହ୍ମପ୍ରଜାପତୀ । ଏହିପରି ଅଗ୍ନିବାୟୂ, ବାୟ୍ୱଗ୍ନୀ ଇତ୍ୟାଦି ।

ସୂତ୍ର—ବ୍ରହ୍ମପ୍ରଜାପତିପ୍ରଭୃତି କେତେକ ସ୍ଥାନରେ ଆ ହୁଏ ନାହିଁ ।

'ନ ବ୍ରହ୍ମପ୍ରଜାପତ୍ୟାଦେଃ'

(ଟ) ଅଗ୍ନିଶ୍ଚ ସୋମଶ୍ଚ – ଅଗ୍ନୀଷୋମୌ (ସ୍ ସ୍ଥାନରେ ଷ୍ ହେଲା) । ଏହିପରି ଅଗ୍ନୀବରୁଣୌ ।

ସୂତ୍ର – ସୋମ ଓ ବରୁଣ ଶବ୍ଦ ପରେ ଥିଲେ ଅଗ୍ନି ଶବ୍ଦର 'ଇ' ସ୍ଥାନରେ 'ଈ' ହୁଏ ।

(ଠ) ଦ୍ୟୌଶ୍ଚ ଭୂମିଶ୍ଚ – ଦ୍ୟାବାଭୂମୀ । ଦ୍ୟୌଶ୍ଚ ପୃଥିବୀ ଚ – ଦ୍ୟାବା-ପୃଥିବ୍ୟୌ, ଦିବସ୍ପୃଥିବ୍ୟୌ ।

ସୂତ୍ର—ପୂର୍ବରେ ଥିବା ଦିବ୍ ଶବ୍ଦସ୍ଥାନରେ ଦ୍ୟାବା ହୁଏ; ମାତ୍ର ପୃଥିବୀ ଶବ୍ଦ ପରେ ଥିଲେ ଦ୍ୟାବା ଓ ଦିବସ୍ ହୁଏ ।

୨ । ସମାହାରଦ୍ୱନ୍ଦ୍ୱ:—ଦୁଇ ବା ବହୁ ବିଶେଷ୍ୟପଦର ସମଷ୍ଟି ବୁଝାଇଲେ ସମାହାରଦ୍ୱନ୍ଦ୍ୱ ସମାସ ହୁଏ । ଏହି ସମାସରେ ସମସ୍ତପଦ କ୍ଲୀବଲିଙ୍ଗ ଓ ଏକବଚନାନ୍ତ ହୁଏ । 'ସଂହତୌ ସମାହାରଃ'

ସାଧାରଣତଃ ପ୍ରାଣୀର ଅଙ୍ଗବାଚକ, ବାଦ୍ୟର ଅଙ୍ଗବାଚକ, ବହୁବଚନାନ୍ତ ସେନାଙ୍ଗବାଚକ, ବିଭିନ୍ନ ଲିଙ୍ଗର ନଦୀ ଓ ଦେଶବାଚକ, ନିତ୍ୟବିରୋଧିପ୍ରାଣି-ବାଚକ ଓ ସ୍ପୃଶ୍ୟଶୂଦ୍ରବାଚକ ପଦମାନଙ୍କର ସମାହାରଦ୍ୱନ୍ଦ୍ୱ ସମାସ ହୁଏ ।

(କ) ପ୍ରାଣୀର ଅଙ୍ଗବାଚକ:—ପାଣୀ ଚ ପାଦୌ ଚ ତେଷାଂ ସମାହାରଃ – ପାଣିପାଦମ୍ । ଏହିପରି କରଚରଣମ୍,କର୍ଣ୍ଣନାସିକମ୍ ଇତ୍ୟାଦି ।

(ଖ) ବାଦ୍ୟର ଅଙ୍ଗବାଚକ:—ପଟହଶ୍ଚ ମୃଦଙ୍ଗଶ୍ଚ ତୟୋଃ ସମାହାରଃ – ପଟହମୃଦଙ୍ଗମ୍ । ଏହିପରି ଶଙ୍ଖଦୁନ୍ଦୁଭି ଇତ୍ୟାଦି ।

(ଗ) ସେନାଙ୍ଗବାଚକ: – ରଥିକାଶ୍ଚ ଅଶ୍ୱାରୋହାଶ୍ଚ ତେଷାଂ ସମାହାରଃ – ରଥିକାଶ୍ୱାରୋହମ୍ । ଏହିପରି ଧନୁଃଶରମ୍, ଶରତୂଣୀରମ୍ ।

(ମାତ୍ର) ରଥିକଶ୍ଚ ଅଶ୍ୱାରୋହଶ୍ଚ – ରଥିକାଶ୍ୱାରୋହୌ (ଇତରେତର) ।

(ଘ) ବିଭିନ୍ନଲିଙ୍ଗର ନଦୀ ଓ ଦେଶବାଚକ:—ଗଙ୍ଗା ଚ ଶୋଣଶ୍ଚ – ଗଙ୍ଗାଶୋଣମ୍, କାଶୀ ଚ ପ୍ରୟାଗଶ୍ଚ – କାଶୀପ୍ରୟାଗମ୍ ଇତ୍ୟାଦି ।

(ମାତ୍ର) ଗଙ୍ଗାଯମୁନେ ଓ ମଦ୍ରଂବିଦେହୌ ପ୍ରଭୃତି ଇତରେତର ଦ୍ୱନ୍ଦ୍ୱ ।

(ଙ) ନିତ୍ୟବୈରବାଚିପ୍ରାଣିବାଚକଃ – ଅହିଶ୍ଚ ନକୁଳଶ୍ଚ .. ତେଷାଂ ସମାହାରଃ – ଅହିନକୁଳମ୍ । ଏହିପରି ମାର୍ଜାରମୂଷିକମ୍ ଇତ୍ୟାଦି ।

(ଚ) ସ୍ପୃଶ୍ୟଶୂଦ୍ରବାଚକଃ – ଗୋପଶ୍ଚ ନାପିତଶ୍ଚ ତୟୋଃ ସମାହାରଃ – ଗୋପନାପିତମ୍ । ଏହିପରି କର୍ମକାରକୁମ୍ଭକାରମ୍ ଇତ୍ୟାଦି ।

## * ଦ୍ୱନ୍ଦ୍ୱସମାସରେ ଏକଶେଷବିଧିଃ–

(କ) କୃଷ୍ଣଶ୍ଚ କୃଷ୍ଣଶ୍ଚ—କୃଷ୍ଣୌ, ବାଳକଶ୍ଚ ବାଳକଶ୍ଚ ବାଳକଶ୍ଚ—ବାଳକାଃ ଇତ୍ୟାଦି ।

ସୂତ୍ର—ସମାନ ଆକୃତିବିଶିଷ୍ଟ ଏକ ବିଭକ୍ତିଯୁକ୍ତ ଦୁଇ ବା ବହୁପଦ ମଧ୍ୟରୁ ଶେଷ ପଦଟି ଅବଶିଷ୍ଟ ରହେ । ଦୁଇଟି ଏକବଚନାନ୍ତ ପଦର ସମାସ ହେଲେ ସମସ୍ତପଦ ଦ୍ୱିବଚନାନ୍ତ ଓ ବହୁପଦର ସମାସ ହେଲେ ସମସ୍ତପଦ ବହୁବଚନାନ୍ତ ହୁଏ । 'ଆଦେଶ୍ଚ ଦ୍ୱନ୍ଦ୍ୱେ'

(ଖ) ଘଟଶ୍ଚ କୁମ୍ଭଶ୍ଚ—କୁମ୍ଭୌ, ଘଟଶ୍ଚ କୁମ୍ଭଶ୍ଚ କଳଶଶ୍ଚ – କଳଶାଃ ଇତ୍ୟାଦି ।

ସୂତ୍ର—ଭିନ୍ନ ଆକୃତିବିଶିଷ୍ଟ ସମାନାର୍ଥକ ପଦମାନଙ୍କ ମଧ୍ୟରୁ ଶେଷ ପଦଟି ଅବଶିଷ୍ଟ ରହେ ।

(ଗ) ବ୍ରାହ୍ମଣଶ୍ଚ ବ୍ରାହ୍ମଣୀ ଚ – ବ୍ରାହ୍ମଣୌ । ହଂସଶ୍ଚ ହଂସୀ ଚ – ହଂସୌ ଇତ୍ୟାଦି ।

---

* କେହି କେହି ଏକଶେଷକୁ ସମାସମଧ୍ୟରେ ଗ୍ରହଣ କରନ୍ତି ନାହିଁ; ମାତ୍ର ସିଦ୍ଧାନ୍ତଚନ୍ଦ୍ରିକା, କଳାପ ଓ ସୁବୋଧ ପ୍ରଭୃତି ଏକାଧିକ ବ୍ୟାକରଣ-ମତରେ ଏକଶେଷ ଦ୍ୱନ୍ଦ୍ୱସମାସର ଅନ୍ତର୍ଗତ । ସିଦ୍ଧାନ୍ତଚନ୍ଦ୍ରିକାର 'ଆଦେଶ୍ଚ ଦ୍ୱନ୍ଦ୍ୱେ'ସୂତ୍ର ଏବଂ ତାହାର ସୁବୋଧିନୀ ଟୀକା ଅନୁସନ୍ଧେୟ । 'ଜଗତଃ ପିତରୌ ବନ୍ଦେ'ଇତ୍ୟାଦି ଶ୍ଲୋକର ଟୀକାରେ ମଲ୍ଲିନାଥ ଲେଖିଅଛନ୍ତି, "ପିତରୌ – ମାତା ଚ ପିତା ଚ (ଦ୍ୱନ୍ଦ୍ୱୈକଶେଷଃ)" । ଏହି ସବୁ ପ୍ରମାଣ ଅନୁସାରେ 'ଏକ-ଶେଷ' ଦ୍ୱନ୍ଦ୍ୱସମାସ ଅନ୍ତର୍ଗତ । କେତେକ ଏହାକୁ ଏକଶେଷଦ୍ୱନ୍ଦ୍ୱ କହନ୍ତି ।

ସୂତ୍ର — ଏକଜାତୀୟ ପୁରୁଷ ଓ ସ୍ତ୍ରୀବାଚକ ପଦମାନଙ୍କର ସମାସରେ ପୁରୁଷବାଚକ ପଦ ଅବଶିଷ୍ଟ ରହେ ।

(ଘ) ଭ୍ରାତା ଚ ସ୍ୱସା ଚ — ଭ୍ରାତରୌ, ପୁତ୍ରଶ୍ଚ ଦୁହିତା ଚ — ପୁତ୍ରୌ ।

ସୂତ୍ର—ଭ୍ରାତୃ ଓ ସ୍ୱସୃ ଶବ୍ଦମଧ୍ୟରୁ ଭ୍ରାତୃ ଶବ୍ଦ ଏବଂ ପୁତ୍ର ଓ ଦୁହିତୃ ଶବ୍ଦମଧ୍ୟରୁ ପୁତ୍ର ଶବ୍ଦ ଅବଶିଷ୍ଟ ରହେ ।

(ଙ) ମାତା ଚ ପିତା ଚ—ପିତରୌ, ଶ୍ୱଶ୍ରୂଶ୍ଚ ଶ୍ୱଶୁରଶ୍ଚ — ଶ୍ୱଶୁରୌ ।

ସୂତ୍ର—ସାହଚର୍ଯ୍ୟ ଅର୍ଥରେ ମାତୃ ଓ ପିତୃ ଶବ୍ଦମଧ୍ୟରୁ ପିତୃ ଶବ୍ଦ ଏବଂ ଶ୍ୱଶ୍ରୂ ଓ ଶ୍ୱଶୁର ଶବ୍ଦମଧ୍ୟରୁ ଶ୍ୱଶୁର ଶବ୍ଦ ଅବଶିଷ୍ଟ ରହେ ।

ଦ୍ୱନ୍ଦ୍ୱସମାସରେ ସାଧାରଣନିୟମର ବହିର୍ଭୂତ: —

ସ୍ତ୍ରୀ ଚ ପୁମାଂଶ୍ଚ—ସ୍ତ୍ରୀପୁଂସୌ । ମାତା ଚ ପିତା ଚ — ମାତରପିତରୌ । ଜାୟା ଚ ପତିଶ୍ଚ ଦମ୍ପତୀ, ଜମ୍ପତୀ ଓ ଜାୟାପତୀ । କୁଶଶ୍ଚ ଲବଶ୍ଚ — କୁଶୀଲବୌ । ନକ୍ତଞ୍ଚ ଦିବା ଚ—ନକ୍ତନ୍ଦିବମ୍ । ରାତ୍ରିଶ୍ଚ ଦିବା ଚ — ରାତ୍ରିନ୍ଦିବମ୍ । ଅହଶ୍ଚ ନିଶା ଚ—ଅହର୍ନିଶମ୍ । ଗାବଶ୍ଚ ଅଶ୍ୱାଶ୍ଚ — ଗବାଶ୍ୱମ୍ । ପୁତ୍ରଶ୍ଚ ପୌତ୍ରଶ୍ଚ — ପୁତ୍ରପୌତ୍ରମ୍ । ଦାସୀ ଚ ଦାସଶ୍ଚ—ଦାସୀଦାସମ୍ । ସ୍ତ୍ରୀ ଚ କୁମାରଶ୍ଚ—ସ୍ତ୍ରୀକୁମାରମ୍ ଇତ୍ୟାଦି ।

## ବହୁବ୍ରୀହି

ସମସ୍ୟମାନପଦ ଗୁଡ଼ିକର ଅର୍ଥ ଯାହା ସମସ୍ତପଦର ଅର୍ଥ ତାହା ନ ହୋଇ ତଦ୍‌ବିଶିଷ୍ଟ ଅନ୍ୟ ଅର୍ଥ ହେଲେ ବହୁବ୍ରୀହିସମାସ ହୁଏ ।

'ବହୁବ୍ରୀହିରନ୍ୟାର୍ଥେ'

ବହୁବ୍ରୀହିସମାସରେ ସମସ୍ତପଦ ବିଶେଷଣ । ଏହି ସମାସ କରିବା ସମୟରେ ବ୍ୟାସବାକ୍ୟରେ ଅର୍ଥ ଅନୁସାରେ ଦ୍ୱିତୀୟାଦି ବିଭକ୍ତ୍ୟନ୍ତ ଯଦ୍ ଶବ୍ଦର ପ୍ରୟୋଗ କରାଯାଏ । ଏହି ସମାସ ସାଧାରଣତଃ ପାଞ୍ଚ ପ୍ରକାର ।

୧ । ସମାନାଧିକରଣବହୁବ୍ରୀହି — (କ) ଆରୂଢ଼ଃ ବାନରଃ ଯଂ ସଃ — ଆରୂଢ଼ବାନରଃ, କୃତଂ କାର୍ଯ୍ୟଂ ଯେନ ସଃ — କୃତକାର୍ଯ୍ୟଃ, ଦତ୍ତଃ ଉପଦେଶଃ ଯସ୍ମୈ ସଃ—ଦତ୍ତୋପଦେଶଃ, ଶ୍ରୁତଃ ବୃତ୍ତାନ୍ତଃ ଯସ୍ମାତ୍ ସଃ — ଶ୍ରୁତବୃତ୍ତାନ୍ତଃ,

ପୀତମ୍ ଅମ୍ବରଂ ଯସ୍ୟ ସଃ—ପୀତାମ୍ବରଃ, ନିର୍ମଳଂ ଜଳଂ ଯସ୍ମିନ୍ ସଃ—ନିର୍ମଳଜଳଃ ଇତ୍ୟାଦି ।

ସୂତ୍ର—ବିଶେଷ୍ୟପଦ ସହ ବିଶେଷଣପଦର ମିଳନରେ ଏହି ସମାସ ହୁଏ ।

(ଖ) ଉନ୍ନତା ଗ୍ରୀବା ଯସ୍ୟ ସଃ—ଉନ୍ନତଗ୍ରୀବଃ, ସୁନ୍ଦରୀ ଭାର୍ଯ୍ୟା ଯସ୍ୟ ସଃ—ସୁନ୍ଦରଭାର୍ଯ୍ୟଃ, ଏକା ଭାର୍ଯ୍ୟା ଯସ୍ୟ ସଃ—ଏକଭାର୍ଯ୍ୟଃ, ପଞ୍ଚ ଗାବଃ ଯସ୍ୟ ସଃ—ପଞ୍ଚଗୁଃ ଇତ୍ୟାଦି ।

ସୂତ୍ର—ପୂର୍ବପଦରେ ଥିବା ଉକ୍ତପୁଂସ୍କ ସ୍ତ୍ରୀଲିଙ୍ଗ (ବିଶେଷଣ) ପୁଂଲିଙ୍ଗ ପରି ହୁଏ ଓ ପରପଦର ଅନ୍ତ୍ୟସ୍ୱର * ହ୍ରସ୍ୱ ହୁଏ ।

(ଗ) ଗଙ୍ଗା ଭାର୍ଯ୍ୟା ଯସ୍ୟ ସଃ—ଗଙ୍ଗାଭାର୍ଯ୍ୟଃ, ପଞ୍ଚମୀ ଭାର୍ଯ୍ୟା ଯସ୍ୟ ସଃ—ପଞ୍ଚମୀଭାର୍ଯ୍ୟଃ, ସୁକେଶୀ ଭାର୍ଯ୍ୟା ଯସ୍ୟ ସଃ—ସୁକେଶୀଭାର୍ଯ୍ୟଃ, ବାମୋରୂଃ ଭାର୍ଯ୍ୟା ଯସ୍ୟ ସଃ—ବାମୋରୂଭାର୍ଯ୍ୟଃ, ରସିକା ଭାର୍ଯ୍ୟା ଯସ୍ୟ ସଃ—ରସିକାଭାର୍ଯ୍ୟଃ ଓ ପାଚିକା ଭାର୍ଯ୍ୟା ଯସ୍ୟ ସଃ—ପାଚିକାଭାର୍ଯ୍ୟଃ ।

ସୂତ୍ର—ପୂର୍ବପଦରେ ଥିବା ସଂଜ୍ଞାବାଚକ, ପୂରଣବାଚକ, ଜାତିବାଚକ, ସ୍ୱାଙ୍ଗବାଚକ, 'ଊଙ୍' ପ୍ରତ୍ୟୟାନ୍ତ ଏବଂ ତଦ୍ଧିତ 'କ' ଓ 'ଅକ' ପ୍ରତ୍ୟୟାନ୍ତ ସ୍ତ୍ରୀଲିଙ୍ଗ ଶବ୍ଦ ପୁଂଲିଙ୍ଗ ପରି ହୁଏ ନାହିଁ ।

୨ । ବ୍ୟଧିକରଣବହୁବ୍ରୀହି:—ଦଣ୍ଡଃ ପାଣୌ ଯସ୍ୟ ସଃ—ଦଣ୍ଡପାଣିଃ । ଏହିପରି ବୀଣାପାଣିଃ, ଲଗୁଡ଼ହସ୍ତଃ ଇତ୍ୟାଦି ।

ସୂତ୍ର—ବିଶେଷ୍ୟପଦ ସହ ବିଶେଷ୍ୟପଦର ମିଳନରେ ଏହି ସମାସ ହୁଏ ।

୩ । ସହାର୍ଥବହୁବ୍ରୀହି:—ଅନୁଜେନ ସହ ବର୍ତ୍ତମାନଃ—ସାନୁଜଃ, ସହାନୁଜଃ । ବନସ୍ଥେନ ସହ ବର୍ତ୍ତମାନମ୍—ସବନସ୍ଥମ୍, ସହବନସ୍ଥମ୍ ଇତ୍ୟାଦି ।

ସୂତ୍ର—ତୃତୀୟାନ୍ତ ପଦ ସହିତ 'ସହ' ଶବ୍ଦର ସମାସ ହୁଏ ଓ 'ସହ' ସ୍ଥାନରେ 'ସ' ବିକଳ୍ପେ ହୁଏ ।

---

* ଆ ହ୍ରସ୍ୱ ହେଲେ ଅ; ଈ, ଏ, ଐ ହ୍ରସ୍ୱ ହେଲେ ଇ; ଊ, ଓ, ଔ ହ୍ରସ୍ୱ ହେଲେ ଉ; ଋ, ଅର୍, ଆର୍ ହ୍ରସ୍ୱ ହେଲେ ଋ ହୁଏ ।

୪ । ବ୍ୟତିହାରବହୁବ୍ରୀହିः — ଦଣ୍ଡୈଃ ଦଣ୍ଡୈଃ ପ୍ରହୃତ୍ୟ ପ୍ରବୃତ୍ତଂ ଯତ୍ର ଯୁଦ୍ଧମ୍—ଦଣ୍ଡାଦଣ୍ଡି, କେଶେଷୁ କେଶେଷୁ ଗୃହୀତ୍ୱା ପ୍ରବୃତ୍ତଂ ଯତ୍ର ଯୁଦ୍ଧମ୍ — କେଶାକେଶି ଇତ୍ୟାଦି ।

ସୂତ୍ର — ପରସ୍ପର ଯୁଦ୍ଧ ବୁଝାଇଲେ ସମାନାକାର ତୃତୀୟାନ୍ତ ଓ ସପ୍ତମ୍ୟନ୍ତ ପଦର ସମାସ ହୁଏ, ପୂର୍ବପଦର ଅନ୍ତ୍ୟସ୍ୱର ଦୀର୍ଘ ହୁଏ ଏବଂ ପର-ପଦରୁ ଉତ୍ତର 'ଇ' ପ୍ରତ୍ୟୟ ହୁଏ । (ଏହି ସମାସନିଷ୍ପନ୍ନ ପଦ ଅବ୍ୟୟ ।)

୫ । ଉପମିତ ବା ମଧ୍ୟପଦଲୋପୀ ବହୁବ୍ରୀହିः — ଚନ୍ଦ୍ର ଇବ ଆନନଂ ଯସ୍ୟାଃ ସା—ଚନ୍ଦ୍ରାନନା, ମୃଗସ୍ୟ ନୟନେ ଇବ ନୟନେ ଯସ୍ୟାଃ ସା — ମୃଗନୟନା, ବିଗତଃ ଅର୍ଥଃ ଯସ୍ମାତ୍ ସଃ—ବ୍ୟର୍ଥଃ ଇତ୍ୟାଦି ।

ସୂତ୍ର — ବହୁବ୍ରୀହି ସମାସରେ ସ୍ଥାନେ ସ୍ଥାନେ ମଧ୍ୟପଦର ଲୋପ ହୁଏ ।

ବହୁବ୍ରୀହିସମାସରେ ବୈଶିଷ୍ଟ୍ୟः —

(କ) ନ (ନାସ୍ତି) ପ୍ରଜା ଯସ୍ୟ ସଃ — ଅପ୍ରଜାଃ (ଅପ୍ରଜସ୍) । ଏହିପରି ଦୁଷ୍ପ୍ରଜାଃ, ସୁପ୍ରଜାଃ ଇତ୍ୟାଦି । ନାସ୍ତି ମେଧା ଯସ୍ୟ ସଃ—ଅମେଧାଃ । ଏହିପରି ଦୁର୍ମେଧାଃ, ସୁମେଧାଃ, ମନ୍ଦମେଧାଃ, ଅଳ୍ପମେଧାଃ ଇତ୍ୟାଦି ।

ସୂତ୍ର — ନଞ୍, ଦୁର୍ ଓ ସୁ ର ପରେ ଥିବା ପ୍ରଜା ଶବ୍ଦ ଏବଂ ନଞ୍, ଦୁର୍, ସୁ, ମନ୍ଦ ଓ ଅଳ୍ପ ଶବ୍ଦର ପରେ ଥିବା ମେଧା ଶବ୍ଦରୁ ଉତ୍ତର ଅସ୍ ହୁଏ ।

'ନିତ୍ୟମସିଚ୍ ପ୍ରଜାମେଧୟୋଃ'

(ଖ) ଦଶାନାଂ ସମୀପେ—ଉପଦଶାଃ, ବିଂଶତେଃ ଆସନ୍ନାଃ — ଆସନ୍ନବିଂଶାଃ, ତ୍ରିଂଶତଃ ଅଦୂରେ — ଅଦୂରତ୍ରିଂଶାଃ, ଚତ୍ୱାରିଂଶତଃ ଅଧିକାଃ — ଅଧିକ-ଚତ୍ୱାରିଂଶାଃ, ଦ୍ୱୌ ବା ତ୍ରୟୋ ବା—ଦ୍ୱିତ୍ରାଃ, ତ୍ରୟୋ ବା ଚତ୍ୱାରୋ ବା—ତ୍ରିଚତୁରାଃ, ପଞ୍ଚ ବା ଷଟ୍ ବା — ପଞ୍ଚଷାଃ, ସପ୍ତ ବା ଅଷ୍ଟ ବା — ସପ୍ତାଷ୍ଟାଃ ।

ସୂତ୍ର — ଅବ୍ୟୟ, ଆସନ୍ନ, ଅଦୂର, ଅଧିକ ଓ ସଂଖ୍ୟାବାଚକ ଶବ୍ଦର ସଂଖ୍ୟାବାଚକ ଶବ୍ଦ ସହ ସମାସ ହୁଏ ଓ ଅନ୍ତସ୍ଥିତ ସଂଖ୍ୟାବାଚକ ଶବ୍ଦ ଆକାରାନ୍ତ ହୁଏ ।

(ଗ) ଭଗ୍ନଂ ଧନୁଃ ଯସ୍ୟ ସଃ—ଭଗ୍ନଧନ୍ୱା, ଅଧିଜ୍ୟଂ ଧନୁଃ ଯସ୍ୟ ସଃ—ଅଧିଜ୍ୟଧନ୍ୱା, ପିନାକଂ ଧନୁଃ ଯସ୍ୟ ସଃ —ପିନାକଧନ୍ୱା ଓ ପିନାକଧନୁଃ(ଶିବ) ।

ସୂତ୍ର – ପରପଦରେ ଥିବା ଧନୁସ୍ ଶବ୍ଦର ସ୍ ସ୍ଥାନରେ ଅନଙ୍ (ଅନ୍) ଆଦେଶ ହୁଏ; ମାତ୍ର ନାମ ବୁଝାଇଲେ ଅନଙ୍ ଆଦେଶ ବିକଳ୍ପେ ହୁଏ ।

'ଧନୁଷଶ୍ଚାଽନଙ୍' 'ବା ସଂଜ୍ଞାୟାମ୍'

(ଘ) ଗନ୍ତୁଂ କାମଃ ଯସ୍ୟ ସଃ – ଗନ୍ତୁକାମଃ । ଏହିପରି ଭୋକ୍ତୁମନାଃ । ପଦ୍ମଂ ନାଭୌ ଯସ୍ୟ ସଃ—ପଦ୍ମନାଭଃ । ଏହିପରି ଊର୍ଣ୍ଣନାଭଃ । ସମାନଂ ଜ୍ୟୋତିଃ ଯସ୍ୟ ସଃ – ସଜ୍ୟୋତିଃ । ଏହିପରି ସଗୋତ୍ରଃ ଓ ସବର୍ଣ୍ଣଃ ଇତ୍ୟାଦି ।

ସୂତ୍ର—କାମ ଓ ମନସ୍ ଶବ୍ଦ ପରେ ଥିଲେ ତୁମ୍ ପ୍ରତ୍ୟୟର ମ୍ ଲୋପ ହୁଏ, ନାମ ବୁଝାଇଲେ ନାଭି ଶବ୍ଦରୁ ଉତ୍ତର ଅପ୍ ପ୍ରତ୍ୟୟ (ନାଭି ସ୍ଥାନରେ ନାଭ) ହୁଏ ଓ ଜ୍ୟୋତିସ୍ ପ୍ରଭୃତି ଶବ୍ଦ ପରେ ଥିଲେ ସମାନ ଶବ୍ଦ ସ୍ଥାନରେ ସ ହୁଏ ।

ବହୁବ୍ରୀହିସମାସରେ ପୂର୍ବ ଓ ପରନିପାତ:—

ପାପେ ମତିଃ ଯସ୍ୟ ସଃ—ପାପମତିଃ । ମହାନ୍ତୌ ବାହୂ ଯସ୍ୟ ସଃ—ମହାବାହୁଃ, ତ୍ୟକ୍ତଂ ଧନଂ ଯେନ ସଃ – ତ୍ୟକ୍ତଧନଃ ଇତ୍ୟାଦି ।

ସୂତ୍ର—ସପ୍ତମ୍ୟନ୍ତ, ବିଶେଷଣ ଓ କ୍ତ ପ୍ରତ୍ୟୟାନ୍ତ ପଦ ପ୍ରାୟ ପୂର୍ବରେ ବସେ ।

(ମାତ୍ର) ଗଡ୍ଡୁକଣ୍ଠଃ, ଚନ୍ଦ୍ରଶେଖରଃ ଓ ଲଗୁଡ଼ହସ୍ତଃ—ଏଠାରେ ସପ୍ତମ୍ୟନ୍ତ ପଦ ପରେ ବସେ ।

ବହୁବ୍ରୀହିସମାସରେ ସାଧାରଣନିୟମର ବହିର୍ଭୂତ –

ସୁ (ଶୋଭନଂ) ହୃଦୟଂ ଯସ୍ୟ ସଃ – ସୁହୃଦ (ମିତ୍ର) । ଦୁଃ (ଦୁଷ୍ଟଂ) ହୃଦୟଂ ଯସ୍ୟ ସଃ - ଦୁର୍ହୃଦ୍ (ଶତ୍ରୁ) । ଶୋଭନଂ ପ୍ରାତଃ ଯସ୍ୟ [illegible] – ସୁପ୍ରାତଃ । ଶୋଭନଂ ଦିବା ଯସ୍ୟ ସଃ—ସୁଦିବଃ । ଶୁନଃ ପ[illegible]ବ ପଦାନି ଯସ୍ୟ ସଃ – ଶ୍ୱାପଦଃ । କ୍ଷୀରମ୍ ଉଦକମ୍ ଯସ୍ୟ ସଃ – କ୍ଷୀ[illegible] । ସମାନଃ ପତିଃ ଯସ୍ୟାଃ ସା – ସପତ୍ନୀ ।

# ଅବ୍ୟୟୀଭାବ

ସମୀପ, ଅଭାବ, ପଶ୍ଚାତ୍ ଓ ବିଭକ୍ତିପ୍ରଭୃତି ଅର୍ଥରେ ପୂର୍ବସ୍ଥିତ ଅବ୍ୟୟର ପରସ୍ଥିତ ସୁବନ୍ତପଦ ସହ ମିଳନରେ ଅବ୍ୟୟୀଭାବ ସମାସ ହୁଏ ।

'ପୂର୍ବେଽବ୍ୟୟେଽବ୍ୟୟୀଭାବଃ'

ଅବ୍ୟୟୀଭାବସମାସରେ ପୂର୍ବପଦ (ଅବ୍ୟୟ)ର ଅର୍ଥ ପ୍ରଧାନତଃ ପ୍ରତୀୟମାନ ହୁଏ । ଏହି ସମାସନିଷ୍ପନ୍ନ ପଦ କ୍ଳୀବଲିଙ୍ଗ ଓ ଏକବଚନାନ୍ତ ।

(କ) ଗୃହସ୍ୟ ସମୀପମ୍ – ଉପଗୃହମ୍ ।

ଉପଗୃହ ଶବ୍ଦର ବିଭିନ୍ନ ବିଭକ୍ତିରେ ରୂପ । ଯଥା: –

ପ୍ରଥମା – ଉପଗୃହମ୍ — ପଞ୍ଚମୀ—ଉପଗୃହାତ୍
ଦ୍ୱିତୀୟା – ଉପଗୃହମ୍ — ଷଷ୍ଠୀ – ଉପଗୃହମ୍
ତୃତୀୟା—ଉପଗୃହେଣ, ଉପଗୃହମ୍ — ସପ୍ତମୀ—ଉପଗୃହେ, ଉପଗୃହମ୍
ଚତୁର୍ଥୀ – ଉପଗୃହମ୍

ସୂତ୍ର—ଅବ୍ୟୟୀଭାବସମାସନିଷ୍ପନ୍ନ ଅକାରାନ୍ତ ଶବ୍ଦର ପରେ ଥିବା ବିଭକ୍ତିସ୍ଥାନରେ ଅମ୍ ହୁଏ; ମାତ୍ର ପଞ୍ଚମୀ ବିଭକ୍ତିରେ ଅମ୍ ହୁଏ ନାହିଁ ଓ ତୃତୀୟା ଏବଂ ସପ୍ତମୀ ବିଭକ୍ତିରେ ବିକଳ୍ପେ ଅମ୍ ହୁଏ ।

ବିଘ୍ନସ୍ୟ ଅଭାବଃ—ନିର୍ବିଘ୍ନମ୍, ଗୃହସ୍ୟ ପଶ୍ଚାତ୍ – ଅନୁଗୃହମ୍, ଗୃହେ ଇତି—ଅଧିଗୃହମ୍ ଇତ୍ୟାଦି ।

(ଖ) ଶକ୍ତିମନତିକ୍ରମ୍ୟ – ଯଥାଶକ୍ତି । ବିଧିମନତିକ୍ରମ୍ୟ—ଯଥାବିଧି ଇତ୍ୟାଦି ।

ସୂତ୍ର—ଅକାରାନ୍ତ ବ୍ୟତୀତ ଅନ୍ୟ ଶବ୍ଦମାନଙ୍କରୁ ବିଭକ୍ତିର ଲୋପ ହୁଏ ।

(ଗ) ନଦ୍ୟା ସମ୍ମୁଖ ନ ପୂଜ୍ୟତେ – ଅଧିନଦମ୍ ଇତ୍ୟାଦି ।

ସୂତ୍ର – ଅବ୍ୟୟୀଭାବସମାସରେ ପରପଦର ଶେଷରେ ଥିବା ଦୀର୍ଘସ୍ୱର ହ୍ରସ୍ୱ ହୁଏ ।

(ଘ) ଅକ୍ଷି ପ୍ରତି—ପ୍ରତ୍ୟକ୍ଷମ୍, ଅକ୍ଷ୍ଣୋଃ ପରମ୍ – ପରୋକ୍ଷମ୍, ଅକ୍ଷ୍ଣୋଃ ପଶ୍ଚାତ୍ – ଅନ୍ୱକ୍ଷମ୍ । ରାଜ୍ଞଃ ସମୀପମ୍—ଉପରାଜମ୍, ଆତ୍ମାନମ୍ ଅଧିକୃତ୍ୟ— ଅଧ୍ୟାତ୍ମମ୍ ।

ସୂତ୍ର—ପ୍ରତ, ପର, ସମ୍ ଓ ଅନୁର ପରେ ଥିବା ଅକ୍ଷଶବ୍ଦରୁ ଉତ୍ତର ଓ ଅନ୍ୟଗାନ୍ତ ଶବ୍ଦରୁ ଉତ୍ତର ଟଚ୍ (ଅ) ପ୍ରତ୍ୟୟ ହୁଏ ।

(ଙ) ଶାକସ୍ୟ ଲେଶଃ – ଶାକପ୍ରତ, ଅକ୍ଷେଣ ବିପରୀତଂ ବୃତ୍ତମ୍—ଅକ୍ଷପରି, ଶଳାକୟା ବିପରୀତଂ ବୃତ୍ତମ୍—ଶଳାକାପରି ଇତ୍ୟାଦି । (ଏଠାରେ ଅବ୍ୟୟ ପରପଦରେ ଅଛି ।)

ସୂତ୍ର—କୌଣସି କୌଣସି ସ୍ଥାନରେ ଅବ୍ୟୟ ପୂର୍ବପଦରେ ନ ଥିଲେ ମଧ୍ୟ ଅବ୍ୟୟୀଭାବସମାସ ହୁଏ ।

(ଚ) ସମୁଦ୍ରସ୍ୟ ପାରମ୍ – ପାରେସମୁଦ୍ରମ୍ (ଅବ୍ୟୟୀଭାବ), ସମୁଦ୍ର-ପାରମ୍ (ଷଷ୍ଠୀତତ୍ପୁରୁଷ) । ଗଙ୍ଗାୟାଃ ମଧ୍ୟମ୍—ମଧ୍ୟେଗଙ୍ଗମ୍ (ଅବ୍ୟୟୀଭାବ), ଗଙ୍ଗାମଧ୍ୟମ୍ (ଷଷ୍ଠୀତତ୍ପୁରୁଷ) ।

ସୂତ୍ର – ଷଷ୍ଠ୍ୟନ୍ତ ପଦ ସହ ପାର ଓ ମଧ୍ୟ ଶବ୍ଦର ଅବ୍ୟୟୀଭାବ ଏବଂ ଷଷ୍ଠୀତତ୍ପୁରୁଷ ସମାସ ହୁଏ । ଅବ୍ୟୟୀଭାବପକ୍ଷରେ ନିପାତନରୁ ପୂର୍ବପଦର ଶେଷ ସ୍ୱରସ୍ଥାନରେ 'ଏ' କାରର ଆଦେଶ ହୁଏ ।

ସମାହାର ଅବ୍ୟୟୀଭାବ: – ପଞ୍ଚାନାଂ ନଦୀନାଂ ସମାହାରଃ – ପଞ୍ଚନଦମ୍, ଦ୍ୱୟୋଃ ଯମୁନୟୋଃ ସମାହାରଃ – ଦ୍ୱିଯମୁନମ୍ ଇତ୍ୟାଦି ।

ସୂତ୍ର—ସମାହାର ଅର୍ଥରେ ସଂଖ୍ୟାବାଚକ ପଦ ସହ ନଦୀବାଚକ ପଦର ଅବ୍ୟୟୀଭାବ ସମାସ ହୁଏ । 'ସଂଖ୍ୟାନଦୀଭ୍ୟଃ ସମାହାରେ'

ଅବ୍ୟୟୀଭାବସମାସରେ ସାଧାରଣନିୟମର ବହିର୍ଭୂତ:—
ଗୋଃ ପଶ୍ଚାତ୍ – ଅନୁଗବମ୍ । ଗୋଃ ସମୀପେ—ଉପଗୁ ।

(ଉପରି ଲିଖିତ ସମାସ ବ୍ୟତୀତ ଆଉ କେତୋଟି ସମାସ ନିମ୍ନରେ ପ୍ରଦତ୍ତ ହେଲା ।)

## ଅଲୁକ୍‌ସମାସ

ପରସ୍ମୈ ପଦମ୍—ପରସ୍ମୈପଦମ୍ । ଆତ୍ମନେ ପଦମ୍ – ଆତ୍ମନେପଦମ୍ । ଅନ୍ତିକାତ୍ ଆଗତଃ – ଅନ୍ତିକାଦାଗତଃ । ବନେ ଚରତି ଇତି – ବନେଚରଃ । ଏହିପରି ଯୁଧିଷ୍ଠିରଃ ଓ ଖେଚରଃ ଇତ୍ୟାଦି ।

ସୂତ୍ର—ସମାସରେ ପୂର୍ବପଦରୁ ଉତ୍ତର ବିଭକ୍ତିର ଲୋପ ହୁଏ; ମାତ୍ର ଯେଉଁ ସମାସରେ ପୂର୍ବପଦରୁ ଉତ୍ତର ବିଭକ୍ତିର ଲୋପ ହୁଏ ନାହିଁ, ତାହାକୁ ଅଲୁକ୍‌ସମାସ କହନ୍ତି ।

## ନିତ୍ୟସମାସ

(କ) କୃଷ୍ଣସର୍ପଃ (ବିଗ୍ରହବାକ୍ୟ ନାହିଁ) । ଦାନାୟ ଇଦମ୍—ଦାନାର୍ଥମ୍, ଅନ୍ୟଃ ଗ୍ରାମଃ—ଗ୍ରାମାନ୍ତରମ୍ (ସମସ୍ୟମାନପଦରେ ବିଗ୍ରହବାକ୍ୟ କରାଯାଇ ନାହିଁ) । ଏହିପରି ଦେଶାନ୍ତରମ୍, ଭବାନ୍ତରମ୍ ଇତ୍ୟାଦି ।

ସୂତ୍ର—ଯେଉଁ ସମାସରେ ବିଗ୍ରହବାକ୍ୟ ନ ଥାଏ କିମ୍ବା ସମସ୍ୟମାନ-ପଦମାନଙ୍କଦ୍ୱାରା ବିଗ୍ରହବାକ୍ୟ କରି ନ ଯାଇ ଅନ୍ୟ ପଦଦ୍ୱାରା କରାଯାଏ, ତାହାକୁ ନିତ୍ୟସମାସ କହନ୍ତି । 'ଅବିଗ୍ରହୋଽସ୍ୱପଦବିଗ୍ରହୋ ନିତ୍ୟଃ'

(ଖ) ବ୍ରାହ୍ମଣାୟ ଅୟମ୍—ବ୍ରାହ୍ମଣାର୍ଥଃ (ପାକଃ), ଦେବାୟ ଇୟମ୍—ଦେବାର୍ଥା (ମାଳା), ବାଳକାୟ ଇଦମ୍—ବାଳକାର୍ଥମ୍ (କନ୍ଦୁକମ୍) ।

ସୂତ୍ର—ପ୍ରୟୋଜନାର୍ଥକ 'ଅର୍ଥ' ଶବ୍ଦ ସହ ଚତୁର୍ଥ୍ୟନ୍ତ ପଦର ସମାସ ହୁଏ ଓ ବ୍ୟାସବାକ୍ୟରେ 'ଇଦମ୍' ଶବ୍ଦର ପ୍ରୟୋଗ କରାଯାଏ ଏବଂ ସମସ୍ତ ପଦ ବିଶେଷ୍ୟର ଲିଙ୍ଗ ପ୍ରାପ୍ତ ହୁଏ । 'ଅର୍ଥେନ ନିତ୍ୟସମାସୋ ବିଶେଷ୍ୟଲିଙ୍ଗତା'

## ସୁପ୍‌ସୁପାସମାସ

ଆପାଦଂ ମସ୍ତକମ୍—ଆପାଦମସ୍ତକମ୍ । ପୂର୍ବଂ ଭୂତଃ—ଭୂତପୂର୍ବଃ । ନ ଅତିଦୂରମ୍—ନାତିଦୂରମ୍ । ନ ଗଣ୍ୟଃ—ନଗଣ୍ୟଃ ଇତ୍ୟାଦି ।

ସୂତ୍ର—ସୁବନ୍ତପଦ ସହ*ସୁବନ୍ତପଦର ସମାସକୁ ସୁପ୍‌ସୁପା କୁହାଯାଏ ।

---

*ସବୁ ସମାସ ସୁବନ୍ତ ପଦଦ୍ୱାରା ହୁଏ; ମାତ୍ର ଏହି ସମାସ ପୂର୍ବୋକ୍ତ ସମାସମାନଙ୍କ ନିୟମରେ ସିଦ୍ଧ ହୁଏ ନାହିଁ ।

## ସମାସରେ କେତୋଟି ବିଶେଷ ବିଧି

୧ । ମହାନ୍ ରାଜା—ମହାରାଜଃ, ପରମମ୍ ଅହଃ—ପରମାହଃ, ପ୍ରିୟଃ ସଖା – ପ୍ରିୟସଖଃ (କର୍ମଧାରୟ) । ମଣ୍ଡୂକାନାଂ ରାଜା—ମଣ୍ଡୂକରାଜଃ, ଇନ୍ଦ୍ରସ୍ୟ ସଖା – ଇନ୍ଦ୍ରସଖଃ (ଷଷ୍ଠୀତତ୍ପୁରୁଷ) ।

ସୂତ୍ର – ତତ୍ପୁରୁଷ ଓ କର୍ମଧାରୟସମାସରେ ରାଜନ୍, ଅହନ୍ ଓ ସଖି ଶବ୍ଦରୁ ଉତ୍ତର ଟଚ୍ (ଅ) ପ୍ରତ୍ୟୟ ହୁଏ । 'ରାଜାହସଖିଭ୍ୟଷ୍ଟଚ୍'

(କିନ୍ତୁ) ପ୍ରଶଂସା କମ୍ବା ନିନ୍ଦା ବୁଝାଇଲେ ଉକ୍ତ ପ୍ରତ୍ୟୟ ହୁଏ ନାହିଁ । ଯଥା: – ଶୋଭନଃ ରାଜା – ସୁରାଜା, କୁତ୍ସିତଃ ରାଜା – କିଂରାଜା ଇତ୍ୟାଦି ।

୨ । ନୃପତେଃ ସଭା—ନୃପତିସଭମ୍, ରକ୍ଷସାଂ ସଭା – ରକ୍ଷଃସଭମ୍, ପିଶାଚାନାଂ ସଭା—ପିଶାଚସଭମ୍ ଇତ୍ୟାଦି ।

ସୂତ୍ର – ରାଜନ୍ ଶବ୍ଦର ଅର୍ଥକୁ ବୁଝାଉଥିବା ଶବ୍ଦ (ରାଜନ୍ ନୁହେଁ) ରକ୍ଷସ୍ ଓ ପିଶାଚ ଶବ୍ଦ ପୂର୍ବରେ ଥିଲେ ପରସ୍ଥିତ 'ସଭା' ଶବ୍ଦ କ୍ଲୀବଲିଙ୍ଗ ହୁଏ ।

(ମାତ୍ର) ରାଜସଭା, ମାନବସଭା, ଦେବସଭା ପ୍ରଭୃତି ସ୍ଥଳରେ କ୍ଲୀବଲିଙ୍ଗ ହୁଏ ନାହିଁ ।

୩ । (କ) ରାଜ୍ଞଃ ସେନା—ରାଜସେନମ୍, ରାଜସେନା । ବୃକ୍ଷସ୍ୟ ଛାୟା – ବୃକ୍ଷଚ୍ଛାୟମ୍, ବୃକ୍ଷଚ୍ଛାୟା । ଗବାଂ ଶାଳା—ଗୋଶାଳମ୍, ଗୋଶାଳା ଇତ୍ୟାଦି ।

ସୂତ୍ର – ପରପଦରେ ଥିବା ସେନା, ସୁରା, ଛାୟା, ଶାଳା ଓ ନିଶା ଶବ୍ଦ ବିକଳ୍ପେ କ୍ଲୀବଲିଙ୍ଗ ହୁଏ । 'ବିଭାଷା ସେନାସୁରାଚ୍ଛାୟାଶାଳାନିଶାନାମ୍'

(ଖ) ତରୂଣାଂ ଛାୟା—ତରୁଚ୍ଛାୟମ୍ ।

ସୂତ୍ର – ବହୁତ ପଦାର୍ଥର ଛାୟା ବୁଝାଇଲେ ଛାୟା ଶବ୍ଦ କେବଳ କ୍ଲୀବଲିଙ୍ଗ ହୁଏ । 'ଛାୟା ବାହୁଲ୍ୟେ'

୪ । କୁକ୍କୁଟ୍ୟାଃ ଅଣ୍ଡମ୍—କୁକ୍କୁଟାଣ୍ଡମ୍, ହଂସ୍ୟାଃ ଶାବକଃ – ହଂସଶାବକଃ, ଛାଗ୍ୟାଃ ଦୁଗ୍ଧମ୍—ଛାଗଦୁଗ୍ଧମ୍ ଓ ମୃଗ୍ୟାଃ ପଦମ୍ – ମୃଗପଦମ୍ ।

ସୂତ୍ର — ଅଣ୍ଡ, ଶାବକ ଓ ପଦ ପ୍ରଭୃତି ଶବ୍ଦ ପରେ ଥିଲେ କୁକ୍କୁଟୀ ପ୍ରଭୃତି ଶବ୍ଦ ପୁଂଲିଙ୍ଗ ପରି ହୋଇଯାଏ । 'କୁକ୍କୁଟ୍ୟାଦୀନାମଣ୍ଡାଦିଷୁ'

୫ । (କ) ଅହଶ୍ଚ ରାତ୍ରିଶ୍ଚ—ଅହୋରାତ୍ରଃ (ଦ୍ୱନ୍ଦ୍ୱ), ସର୍ବା ରାତ୍ରିଃ – ସର୍ବରାତ୍ରଃ (କର୍ମଧାରୟ), ପୂର୍ବଂ ରାତ୍ରେଃ – ପୂର୍ବରାତ୍ରଃ (ଏକଦେଶିତତ୍ପୁରୁଷ), ପୁଣ୍ୟା ରାତ୍ରିଃ—ପୁଣ୍ୟରାତ୍ରଃ(କର୍ମଧାରୟ), ଦ୍ୱୟୋ ରାତ୍ର୍ୟୋଃ ସମାହାରଃ – ଦ୍ୱିରାତ୍ରମ୍ (ସମାହାରଦ୍ୱିଗୁ), ଅତିକ୍ରାନ୍ତଃ ରାତ୍ରିମ୍ – ଅତିରାତ୍ରଃ (ପ୍ରାଦିତତ୍ପୁରୁଷ) ।

ସୂତ୍ର – ରାତ୍ରି ଶବ୍ଦରୁ ଉତ୍ତର ଅଚ୍ (ଅ) ପ୍ରତ୍ୟୟ ହୁଏ, ଯଦି ଅହନ୍, ସର୍ବ, ଏକଦେଶବାଚକ, ପୁଣ୍ୟ ଓ ସଂଖ୍ୟାବାଚକ ଶବ୍ଦ ପୂର୍ବରେ ଥାଏ ।

(ଖ) ସର୍ବମ୍ ଅହଃ—ସର୍ବାହ୍ଣଃ (କର୍ମଧାରୟ),ପୂର୍ବମ୍ ଅହ୍ନଃ – ପୂର୍ବାହ୍ଣଃ (ଏକଦେଶିତତ୍ପୁରୁଷ), ଦ୍ୱୟୋଃ ଅହ୍ନୋଃ ଭବଃ—ଦ୍ୱ୍ୟହ୍ନଃ(ତଦ୍ଧିତାର୍ଥଦ୍ୱିଗୁ) । (ମାତ୍ର) ଏକମ୍ ଅହଃ—ଏକାହଃ ଓ ପୁଣ୍ୟମ୍ ଅହଃ—ପୁଣ୍ୟାହମ୍(କର୍ମଧାରୟ) ।

ସୂତ୍ର—ଅହନ୍ ଶବ୍ଦ ସ୍ଥାନରେ ଅହ୍ନ ହୁଏ, ଉକ୍ତ ସର୍ବ ପ୍ରଭୃତି ଶବ୍ଦ ପୂର୍ବରେ ଥିଲେ । ଏତଦ୍ଭିନ୍ନ ଶବ୍ଦ ପୂର୍ବରେ ଥିଲେ 'ଅହନ୍' ସ୍ଥାନରେ 'ଅହ' ହୁଏ ।

(ଗ) ସପ୍ତାନାମ୍ ଅହ୍ନାଂ ସମାହାରଃ—ସପ୍ତାହଃ (ସମାହାରଦ୍ୱିଗୁ) । ଏହିପରି ପଞ୍ଚାହଃ ଓ ଦଶାହଃ ଇତ୍ୟାଦି ।

ସୂତ୍ର—ସମାହାରଦ୍ୱିଗୁ ସମାସରେ ସଂଖ୍ୟାବାଚକ ଶବ୍ଦର ପରେ ଥିବା 'ଅହନ୍' ଶବ୍ଦ ସ୍ଥାନରେ 'ଅହ୍ନ' ହୁଏ ନାହିଁ ।

୬ । ଶୋଭନଃ ଗନ୍ଧଃ ଯସ୍ୟ ସଃ—ସୁଗନ୍ଧିଃ (ପଦ୍ମଃ ପବନଃ ବା) ।

ସୂତ୍ର—ଅତ୍ୟନ୍ତସଂଯୋଗ ବୁଝାଇଲେ ପରପଦରେ ଥିବା ଗନ୍ଧ ଶବ୍ଦର ଅନ୍ତ୍ୟ 'ଅ' ସ୍ଥାନରେ 'ଇ' ହୁଏ ବହୁବ୍ରୀହିସମାସରେ ।

(ମାତ୍ର) ସୁଗନ୍ଧଃ ଆପଣିକଃ (ଦୋକାନୀ) । କେତେକଙ୍କ ମତରେ ସ୍ୱାଭାବିକ ଗନ୍ଧ ବୁଝାଉ ନ ଥିବାରୁ ସୁଗନ୍ଧଃ ପବନଃ ମଧ୍ୟ ହୁଏ ।

୭ । ଯୁବତି ଜାୟା ଯସ୍ୟ ସଃ—ଯୁବଜାନିଃ (ଯୁବନ୍ ଶବ୍ଦ ପରି) । ଏହିପରି ହୃତଜାନିଃ, ସୀତାଜାନିଃ, ତ୍ୟକ୍ତଜାନିଃ ଓ ପୁନରଜାନିଃ ଇତ୍ୟାଦି ।

ସୂତ୍ର —ପରପଦରେ ଥିବା ଜାୟା ଶବ୍ଦ ସ୍ଥାନରେ ଜାନି ଆଦେଶ ହୁଏ ବହୁବ୍ରୀହିସମାସରେ । 'ଜାୟାୟାନିଙ୍'

୮ । ଦ୍ୱୌ ଦନ୍ତୌ ଯସ୍ୟ ସଃ – ଦ୍ୱିଦନ୍, ସ୍ତ୍ରୀ ଦ୍ୱିଦତୀ । ଶୋଭନାଃ ଦନ୍ତାଃ ଯସ୍ୟ ସଃ—ସୁଦନ୍, ସ୍ତ୍ରୀ: ସୁଦତୀ ।

ସୂତ୍ର – ବୟସ ବୁଝାଇଲେ ସଂଖ୍ୟାବାଚକ ଶବ୍ଦ ଏବଂ 'ସୁ'ର ପରେ ଥିବା ଦନ୍ତ ଶବ୍ଦ ସ୍ଥାନରେ ଦତ୍ ହୁଏ ବହୁବ୍ରୀହିସମାସରେ ।

'ବୟସି ଦନ୍ତସ୍ୟ ଦତୃ'

(ମାତ୍ର) ବୟସ ନ ବୁଝାଇଲେ ଦ୍ୱିଦନ୍ତଃ (ହସ୍ତୀ), ସୁଦନ୍ତଃ (ମାନବଃ) ହୁଏ ।

୯ । (କ) ରାଜ୍ଞଃ ପନ୍ଥାଃ – ରାଜପଥଃ(ଷଷ୍ଠୀତତ୍ପୁରୁଷ) । ଜଲେ ପନ୍ଥାଃ – ଜଲପଥଃ (ସପ୍ତମୀତତ୍ପୁରୁଷ) । ଦକ୍ଷିଣସ୍ୟାଂ ଦିଶି ପନ୍ଥାଃ—ଦକ୍ଷିଣାପଥଃ (ମ: ପ: ଲୋ: କର୍ମଧାରୟ) । ଚତୁଷ୍ପଥମ୍ (ସମାହାର ଦ୍ୱିଗୁ) । ରମ୍ୟପଥଃ (କର୍ମଧାରୟ) । ପଥଃ ସମୀପେ—ଉପପଥମ୍, ବିରୁଦ୍ଧଃ ପନ୍ଥାଃ—ବିପଥମ୍ (ଅବ୍ୟୟୀଭାବ) ।

ସୂତ୍ର – ପରପଦରେ ଥିବା ପଥିନ୍ ଶବ୍ଦରୁ ଉତ୍ତର ଅ (ଅ) ପ୍ରତ୍ୟୟ (ପଥିନ୍ ସ୍ଥାନରେ ପଥ) ହୁଏ ସବୁ ସମାସରେ ।

(ମାତ୍ର) ପ୍ରଶଂସା କିମ୍ବା ନିନ୍ଦା ବୁଝାଇଲେ ଉକ୍ତ ପ୍ରତ୍ୟୟ ହୁଏ ନାହିଁ । ଯଥା:—କୁତ୍ସିତଃ ପନ୍ଥାଃ – କାପନ୍ଥାଃ,ଶୋଭନଃ ପନ୍ଥାଃ —ସୁପନ୍ଥାଃ ଇତ୍ୟାଦି ।

(ଖ) ନ ପନ୍ଥାଃ – ଅପଥମ୍, ଅପନ୍ଥାଃ ।

ସୂତ୍ର—ନଞ୍ ତତ୍ପୁରୁଷ ସମାସରେ ପଥିନ୍ ଶବ୍ଦରୁ ଉତ୍ତର ବିକଳ୍ପେ 'ଅ' ପ୍ରତ୍ୟୟ ହୁଏ ଏବଂ ସମସ୍ତ ପଦ କ୍ଲୀବଲିଙ୍ଗ ହୁଏ ।

'ପଥୋ ବିଭାଷା' 'ଅପଥଂ ତତ୍ପୁରୁଷେ କ୍ଲୀବମ୍'

## ସମାସରେ କେତେକ ନିଷେଧସ୍ଥଳ

୧ । ଚତୁର୍ଥୀ ତତ୍ପୁରୁଷରେ – ଧର୍ମାୟ ପତ୍ନୀ, ଅଶ୍ୱାୟ ଘାସଃ ଓ ବିଦ୍ୟାୟୈ ଆଲୟଃ ପ୍ରଭୃତିଠାରେ ସମାସ ହୁଏ ନାହିଁ ।

ସୂତ୍ର ପ୍ରକୃତିବିକୃତିସମ୍ବନ୍ଧ ନ ଥିଲେ ନିମିତ୍ତ ଅର୍ଥରେ ହେଉଥିବା ଚତୁର୍ଥୀ ବିଭକ୍ତ୍ୟନ୍ତ ପଦର ସମାସ ହୁଏ ନାହିଁ ।

'ବିକୃତିଃ ପ୍ରକୃତ୍ୟା ତାଦର୍ଥ୍ୟେ'

(ମାତ) ଧର୍ମପତ୍ନୀ—ଧର୍ମସ୍ୟ ପତ୍ନୀ, ଅଶ୍ୱଘାସଃ—ଅଶ୍ୱସ୍ୟ ଘାସଃ, ବିଦ୍ୟାଳୟଃ – ବିଦ୍ୟାୟାଃ ଆଳୟଃ ପ୍ରଭୃତିଠାରେ ଷଷ୍ଠୀତତ୍ପୁରୁଷ ସମାସ ହୁଏ ।

୨ । ଷଷ୍ଠୀତତ୍ପୁରୁଷରେ:—(କ) କବୀନାଂ କାଳିଦାସଃ, ଜଳସ୍ୟ ତୃପ୍ତଃ ଓ ରାଜ୍ଞଂ ପୂଜିତଃ ପ୍ରଭୃତିଠାରେ ସମାସ ହୁଏ ନାହିଁ ।

ସୂତ୍ର—ନିର୍ଦ୍ଧାରଣରେ, ତୃପ୍ତ୍ୟର୍ଥପଦ ଓ ବର୍ତ୍ତମାନକାଳୀନ କ୍ତ ପ୍ରତ୍ୟୟାନ୍ତ ପଦଯୋଗରେ ହେଉଥିବା ଷଷ୍ଠୀ ବିଭକ୍ତ୍ୟନ୍ତ ପଦର ସମାସ ହୁଏ ନାହିଁ ।

(ମାତ୍ର) କବିକାଳିଦାସଃ – କବିଷୁ କାଳିଦାସଃ ପ୍ରଭୃତିଠାରେ ସପ୍ତମୀ-ତତ୍ପୁରୁଷ ଏବଂ ଜଳତୃପ୍ତଃ—ଜଳେନ ତୃପ୍ତଃ ଓ ରାଜପୂଜିତଃ—ରାଜଭିଃ ପୂଜିତଃ ପ୍ରଭୃତିଠାରେ ତୃତୀୟା ତତ୍ପୁରୁଷ ସମାସ ହୁଏ ।

(ଖ) ଜଗତାଂ କର୍ତ୍ତା (କୃ+ତୃଚ୍) ଓ ପ୍ରଜାନାଂ ପାଳକଃ (ପାଳି+ଅକ) ପ୍ରଭୃତିଠାରେ ସମାସ ହୁଏ ନାହିଁ ।

ସୂତ୍ର – କର୍ତ୍ତୃବାଚ୍ୟରେ ହେଉଥିବା ତୃଚ୍ (ତୃ) ଓ ଅକ ପ୍ରତ୍ୟୟାନ୍ତ ପଦର ଷଷ୍ଠୀବିଭକ୍ତ୍ୟନ୍ତ ପଦସହିତ ସମାସ ହୁଏ ନାହିଁ ।

'ତୃଜକାଭ୍ୟାଂ କର୍ତ୍ତରି'

(ଏଣୁ) ଜଗତ୍କର୍ତ୍ତା—ଜଗନ୍ତି କରୋତି ଯଃ ସଃ, ପ୍ରଜାପାଳକଃ – ପ୍ରଜାଃ ପାଳୟତି ଯଃ ସଃ ପ୍ରଭୃତିଠାରେ ଉପପଦତତ୍ପୁରୁଷ ସମାସ ହୁଏ ।

(ଗ) ଶୂଦ୍ରାଣାଂ ଯାଜକଃ – ଶୂଦ୍ରଯାଜକଃ, ଦେବାନାଂ ପୂଜକଃ – ଦେବପୂଜକଃ (ଷଷ୍ଠୀତତ୍ପୁରୁଷ) ।

ସୂତ୍ର – ଅକ ପ୍ରତ୍ୟୟାନ୍ତ ଯାଜକ ପ୍ରଭୃତି ଶବ୍ଦର ଷଷ୍ଠ୍ୟନ୍ତ ପଦସହିତ (ପୂର୍ବ ନିୟମ ବ୍ୟତିକ୍ରମ କରି) ସମାସ ହୁଏ । 'ଯାଜକାଦିଭିଶ୍ଚ'

(ଘ) ପୁତ୍ରାଣାଂ ତୃତୀୟଃ ଓ ଛାତ୍ରାଣାଂ ପଞ୍ଚମଃ ପ୍ରଭୃତିଠାରେ ସମାସ ହୁଏ ନାହିଁ ।

ସୂତ୍ର – ପୂରଣବାଚକ ପଦର ଷଷ୍ଠ୍ୟନ୍ତ ପଦ ସହିତ ସମାସ ହୁଏ ନାହିଁ ।

'ନ ପୂରଣାଦ୍ୟର୍ଥୈଃ'

# ସମାସର ବିବିଧ ଉଦାହରଣ

ସମାବାସିତକଟକଃ — ସମାବାସିତଂ କଟକଂ ଯେନ ସଃ (ବହୁବ୍ରୀହି) ।
ଭିକ୍ଷାର୍ଥମ୍—ଭିକ୍ଷାଯୈ ଇଦମ୍ (ନିତ୍ୟସମାସ) ।
ସଭକ୍ତିକମ୍ — ଭକ୍ତ୍ୟା ସହ ବର୍ତ୍ତମାନମ୍ (ସହାର୍ଥବହୁବ୍ରୀହି) ।
ପରିଣତବୟସ୍କଃ — ପରିଣତଂ ବୟଃ ଯସ୍ୟ ସଃ (ବହୁବ୍ରୀହି) ।
ପ୍ରିୟବାଦିନୀ — ପ୍ରିୟଂ ବଦତି ଯା ସା (ଉପପଦତତ୍ପୁରୁଷ) ।
ଧର୍ମଜ୍ଞଃ—ଧର୍ମଂ ଜାନାତି ଯଃ ସଃ (ଉପପଦତତ୍ପୁରୁଷ) ।
ସୁମନଃସଙ୍ଗାତ୍—ସୁମନସାଂ ସଙ୍ଗଃ (ଷଷ୍ଠୀତତ୍ପୁରୁଷ) ତସ୍ମାତ୍ ।
ଆନନ୍ଦପରିପୂର୍ଣ୍ଣଃ — ଆନନ୍ଦେନ ପରିପୂର୍ଣ୍ଣଃ (ତୃତୀୟାତତ୍ପୁରୁଷ) ।
ମହୀପତିନା — ମହ୍ୟାଃ ପତିଃ (ଷଷ୍ଠୀତତ୍ପୁରୁଷ) ତେନ ।
ରାଜ୍ୟଭୋଗମ୍ — ରାଜ୍ୟସ୍ୟ ଭୋଗଃ (ଷଷ୍ଠୀତତ୍ପୁରୁଷ) ତମ୍ ।
ସ୍ୱକୀୟୋଦ୍ୟମେନ — ସ୍ୱକୀୟଃ ଉଦ୍ୟମଃ (କର୍ମଧାରୟ) ତେନ ।
ସ୍ୱଳ୍ପବଳଃ—ସ୍ୱଳ୍ପଂ ବଳଂ ଯସ୍ୟ ସଃ (ବହୁବ୍ରୀହି) ।
ମୃଷାବାଦିନୀମ୍ — ମୃଷା ବଦତି ଯା ସା (ଉପପଦତତ୍ପୁରୁଷ) ତାମ୍ ।
ପକ୍ଷିଶାବକାନ୍ — ପକ୍ଷିଣାଂ ଶାବକାଃ (ଷଷ୍ଠୀତତ୍ପୁରୁଷ) ତାନ୍ ।
ଶଙ୍କାଗ୍ନୀ— ଶଙ୍କଶ୍ଚ ଅଗ୍ନିଶ୍ଚ (ଦ୍ୱନ୍ଦ୍ୱ) ।
ସୂର୍ଯ୍ୟାଗ୍ନିନା — ସୂର୍ଯ୍ୟଃ ଏବ ଅଗ୍ନିଃ (ରୂପକକର୍ମଧାରୟ) ତେନ ।
ମହାକୋପାଃ — ମହାନ୍ କୋପଃ ଯେଷାଂ ତେ (ବହୁବ୍ରୀହି) ।
ତୃଣପ୍ରାଚୁର୍ଯ୍ୟାତ୍—ତୃଣାନାଂ ପ୍ରାଚୁର୍ଯ୍ୟମ୍ (ଷଷ୍ଠୀତତ୍ପୁରୁଷ) ତସ୍ମାତ୍ ।
ଲୋକପୂଜିତଃ—ଲୋକୈଃ ପୂଜିତଃ (ତୃତୀୟାତତ୍ପୁରୁଷ) ।
କ୍ଷୁଧାବିଷ୍ଟଃ — କ୍ଷୁଧୟା ଆବିଷ୍ଟଃ (ତୃତୀୟାତତ୍ପୁରୁଷ) ।
ମଜ୍ଜନ୍ମ — ମମ ଜନ୍ମ (ଷଷ୍ଠୀତତ୍ପୁରୁଷ) ।
ଉପକଣ୍ଠମ୍— କଣ୍ଠସ୍ୟ ସମୀପେ (ଅବ୍ୟୟୀଭାବ) ।
ନିର୍ମାନୁଷମ୍—ନ ସନ୍ତି ମାନୁଷାଃ ଯସ୍ମିନ୍ ତତ୍ (ବହୁବ୍ରୀହି)
(କିମ୍ବା) ମାନୁଷାଣାମ୍ ଅଭାବଃ (ଅବ୍ୟୟୀଭାବ) ।
ଅଭ୍ୟସ୍ତଶାସ୍ତ୍ରଃ — ଅଭ୍ୟସ୍ତଂ ଶାସ୍ତ୍ରଂ ଯେନ ସଃ (ବହୁବ୍ରୀହି) ।

ନରସିଂହଃ — ନରଃ ସିଂହ ଇବ (ଉପମିତକର୍ମଧାରୟଃ) ।
ଶାନ୍ତଚେତସାମ୍ — ଶାନ୍ତଂ ଚେତଃ ଯେଷାଂ ତେ (ବହୁବ୍ରୀହି) ତେଷାମ୍ ।
ଉଚନ୍ତଚଞ୍ଚୁକା — ଉଚନ୍ତଂ ଚଞ୍ଚୁଂ ଯସ୍ୟା ସା (ବହୁବ୍ରୀହି) ।
ତ୍ୱଦର୍ଥମ୍ — ତୁଭ୍ୟମିଦମ୍ (ନିତ୍ୟସମାସ) ।
ପ୍ରତ୍ୟୁପକାରାର୍ଥମ୍ — ପ୍ରତ୍ୟୁପକାରାୟ ଇଦମ୍ (ନିତ୍ୟସମାସ) ।
ଭିକ୍ଷାନ୍ନମ୍ — ଭିକ୍ଷାଲବ୍ଧମ୍ ଅନ୍ନମ୍ (ମଃ ଲୋଃ କର୍ମଧାରୟଃ) ।
ସୁବର୍ଣ୍ଣାଙ୍ଗୁଳୀୟକମ୍ — ସୁବର୍ଣ୍ଣନିର୍ମିତମ୍ ଅଙ୍ଗୁଳୀୟକମ୍ (ମଃ ଲୋଃ କର୍ମଧାରୟଃ) ।
ଚଞ୍ଚଳଚଞ୍ଚୁଃ — ଚଞ୍ଚଳଂ ଚଞ୍ଚୁଂ ଯସ୍ୟ ସଃ (ବହୁବ୍ରୀହି) ।
ସ୍ଫୁଟିତେକ୍ଷଣଃ — ସ୍ଫୁଟିତେ ଈକ୍ଷଣେ ଯସ୍ୟ ସଃ (ବହୁବ୍ରୀହି) ।
ଲବ୍ଧାବଧିଃ — ଲବ୍ଧଃ ଅବଧିଃ ଯେନ ସଃ (ବହୁବ୍ରୀହି) ।
କଥାବିରକ୍ତଃ — କଥାୟାଂ ବିରକ୍ତଃ (ସପ୍ତମୀତତ୍ପୁରୁଷ) ।
ଆଖେଟନାର୍ଥମ୍ — ଆଖେଟନାୟ ଇଦମ୍ (ନିତ୍ୟସମାସ) ।
ଭୋଜରାଜଃ — ଭୋଜନାମା ରାଜା (ମଃ ଲୋଃ କର୍ମଧାରୟଃ) ।
ଚତୁର୍ବଦନଃ — ଚତ୍ୱାରି ବଦନାନି ଯସ୍ୟ ସଃ (ବହୁବ୍ରୀହି) ।
ବହୁଧନିକା — ବହବଃ ଧନିକାଃ ଯସ୍ୟାଂ ସା (ବହୁବ୍ରୀହି) ।
ବହ୍ନିଦାହଃ — ବହ୍ନେଃ ଦାହଃ (ଷଷ୍ଠୀତତ୍ପୁରୁଷ) ।
ନିକ୍ଷିପ୍ତମଣ୍ଡୂକଃ — ନିକ୍ଷିପ୍ତଃ ମଣ୍ଡୂକଃ ଯସ୍ମିନ୍ ସଃ (ବହୁବ୍ରୀହି) ।
ଧନଦଃ — ଧନଂ ଦଦାତି ଯଃ ସଃ (ଉପପଦତତ୍ପୁରୁଷ) ।
ହିରଣ୍ୟକାଦୟଃ — ହିରଣ୍ୟକଃ ଆଦିଃ ଯେଷାଂ ତେ (ବହୁବ୍ରୀହି) ।
ପଙ୍କଜମ୍ — ପଙ୍କାତ୍ ଜାୟତେ ଯତ୍ ତତ୍ (ଉପପଦତତ୍ପୁରୁଷ) ।
ହୃଷ୍ଟପୁଷ୍ଟମ୍ — ହୃଷ୍ଟଂ ପୁଷ୍ଟମ୍ (କର୍ମଧାରୟଃ) ।
ମୁନିପୁଙ୍ଗବଃ — ମୁନିଃ ପୁଙ୍ଗବ ଇବ (ଉପମିତକର୍ମଧାରୟଃ) ।

## ପ୍ରଶ୍ନ

୧ । ବ୍ୟାସବାକ୍ୟ ସହ ସମାସନାମ ଲେଖ:— କୋପାବିଷ୍ଟମନାଃ, ଭକ୍ତିବର୍ଜିତମ୍, ସ୍ୱହସ୍ତସ୍ଥମ୍, ସୁଖୋପାୟଃ, ତଦ୍ବଚଃପ୍ରତୀତଃ, ଯଥାଜ୍ଞାନମ୍, କାଳବନ୍ଧନବଦ୍ଧୌ, ସ୍ୱତପୋବଲେନ ଓ ତ୍ୟକ୍ତାହାରକ୍ରିୟଃ ।

୨ । ଏକପଦରେ ପ୍ରକାଶ କରି ସମାସର ନାମ ଲେଖ :—ଶୀତାଃ ଅଂଶବଃ ଯସ୍ୟ ସଃ, ବାକ୍ କଳହଃ, କୃତା ବିଦ୍ୟା ଯେନ ସଃ, ମାଂସାନି ଚ ଅସ୍ଥୀନି ଚ ତେଷାଂ ସମାହାରଃ ଓ ବୃକ୍ଷମ୍ ଆରୂଢ଼ଃ ।

୩ । ସଂଶୋଧନ କର:—ସୁଗନ୍ଧଂ ପୁଷ୍ପଂ ଆନୟ । ରାଜପଥେ ନରାଃ ସନ୍ତି । ଦୁର୍ଗମପଥା ନ ଗଚ୍ଛ । ତେ ପ୍ରିୟସଖା କୁତ୍ର ଗତା । ତସ୍ୟ ଯଥାଯୋଗ୍ୟଂ ସତ୍କାରଂ କୁରୁ ।

## ତଦ୍ଧିତ

ଶବ୍ଦରୁ ଉତ୍ତର ଅପତ୍ୟପ୍ରଭୃତି ଅର୍ଥରେ ଯେଉଁ ସବୁ ପ୍ରତ୍ୟୟ ଯୋଗ କରାଯାଏ, ସେ ସବୁକୁ ତଦ୍ଧିତ ପ୍ରତ୍ୟୟ ଓ ଉକ୍ତ ପ୍ରତ୍ୟୟଯୁକ୍ତ ଶବ୍ଦମାନଙ୍କୁ 'ତଦ୍ଧିତାନ୍ତ ଶବ୍ଦ' କୁହାଯାଏ । ଯଥା:—ଦଶରଥ+ଅପତ୍ୟାର୍ଥେ 'ଇ'= ଦାଶରଥି ('ଇ' ତଦ୍ଧିତ ପ୍ରତ୍ୟୟ ଓ ଦାଶରଥି ତଦ୍ଧିତାନ୍ତ ଶବ୍ଦ) ।

### ଉତ୍କର୍ଷାର୍ଥପ୍ରତ୍ୟୟ (ତର, ତମ, ଈୟସ୍ ଓ ଇଷ୍ଠ)

ଦୁଇଟି ମଧ୍ୟରେ ତୁଳନା ବୁଝାଇଲେ ବିଶେଷଣପଦପରେ ତର ଓ ଈୟସ୍ ପ୍ରତ୍ୟୟ ଯୋଗ କରି ଉତ୍କର୍ଷବୋଧକ ବିଶେଷଣପଦ ଗଠନ କରାଯାଏ ।

ସମୁଦାୟ ମଧ୍ୟରେ ତୁଳନା ବୁଝାଇଲେ ବିଶେଷଣପଦପରେ ତମ ଓ ଇଷ୍ଠ ପ୍ରତ୍ୟୟ ଯୋଗ କରି ଉତ୍କର୍ଷବୋଧକ ବିଶେଷଣପଦ ଗଠନ କରାଯାଏ ।

'ତର', 'ତମ' ଓ 'ଇଷ୍ଠ' ପ୍ରତ୍ୟୟାନ୍ତ ଶବ୍ଦର ପୁଂଲିଙ୍ଗରେ ନର, ସ୍ତ୍ରୀଲିଙ୍ଗରେ ଆ ପ୍ରତ୍ୟୟ କରି ଲତା ଓ କ୍ଳୀବଲିଙ୍ଗରେ ଫଳ ଶବ୍ଦ ପରି ରୂପ କରାଯାଏ;କିନ୍ତୁ ଈୟସ୍ ପ୍ରତ୍ୟୟାନ୍ତ ଶବ୍ଦର ପୁଂଲିଙ୍ଗରେ ଗରୀୟସ୍, ସ୍ତ୍ରୀଲିଙ୍ଗରେ ଈ ପ୍ରତ୍ୟୟ କରି ନଦୀ ଓ କ୍ଳୀବଲିଙ୍ଗରେ ପୟସ୍ ଶବ୍ଦ ପରି ରୂପ କରାଯାଏ ।

### ୧ । ତର ଓ ଈୟସ୍

ଅୟମନୟୋଃ ଅତିଶୟେନ ଲଘୁଃ—ଲଘୁତରଃ, ଲଘୀୟାନ୍ ।
ଇୟମନୟୋଃ ଅତିଶୟେନ ଲଘ୍ୱୀ—ଲଘୁତରା, ଲଘୀୟସୀ ।
ଇଦମନୟୋଃ ଅତିଶୟେନ ଲଘୁ—ଲଘୁତରମ୍, ଲଘୀୟଃ ।

## ୨ । ତମ ଓ ଇଷ୍ଠ

ଅୟମେଷାମ୍ (ଏଷୁ) ଅତିଶୟେନ ଲଘୁଃ—ଲଘୁତମଃ, ଲଘିଷ୍ଠଃ ।
ଇୟମାସାମ୍ (ଆସୁ) ଅତିଶୟେନ ଲଘ୍ୱୀ—ଲଘୁତମା, ଲଘିଷ୍ଠା ।
ଇଦମେଷାମ୍ (ଏଷୁ) ଅତିଶୟେନ ଲଘୁ—ଲଘୁତମମ୍, ଲଘିଷ୍ଠମ୍ ।

କେତେକ ତର, ତମ, ଈୟସ୍ ଓ ଇଷ୍ଠ ପ୍ରତ୍ୟୟାନ୍ତ ଶବ୍ଦ । ଯଥା:—

| ମୂଳବିଶେଷଣ | ତର | ଈୟସ୍ | ତମ | ଇଷ୍ଠ |
|---|---|---|---|---|
| ପଟୁ (ଦକ୍ଷ) | ପଟୁତର | ପଟୀୟସ୍ | ପଟୁତମ | ପଟିଷ୍ଠ |
| ପ୍ରିୟ | ପ୍ରିୟତର | ପ୍ରେୟସ୍ | ପ୍ରିୟତମ | ପ୍ରେଷ୍ଠ |
| କୃଶ (କ୍ଷୀଣ) | କୃଶତର | କ୍ରଶୀୟସ୍ | କୃଶତମ | କ୍ରଶିଷ୍ଠ |
| ସ୍ଥିର | ସ୍ଥିରତର | ସ୍ଥେୟସ୍ | ସ୍ଥିରତମ | ସ୍ଥେଷ୍ଠ |
| ଅନ୍ତିକ | ଅନ୍ତିକତର | ନେଦୀୟସ୍ | ଅନ୍ତିକତମ | ନେଦିଷ୍ଠ |
| ଅଳ୍ପ | ଅଳ୍ପତର | ଅଳ୍ପୀୟସ୍, କନୀୟସ୍ | ଅଳ୍ପତମ | ଅଳ୍ପିଷ୍ଠ, କନିଷ୍ଠ |
| ଉରୁ (ମହତ୍) | ଉରୁତର | ବରୀୟସ୍ | ଉରୁତମ | ବରିଷ୍ଠ |
| କ୍ଷିପ୍ର (ଶୀଘ୍ର) | କ୍ଷିପ୍ରତର | କ୍ଷେପୀୟସ୍ | କ୍ଷିପ୍ରତମ | କ୍ଷେପିଷ୍ଠ |
| ଦୀର୍ଘ | ଦୀର୍ଘତର | ଦ୍ରାଘୀୟସ୍ | ଦୀର୍ଘତମ | ଦ୍ରାଘିଷ୍ଠ |
| ଦୃଢ଼ (ମଜଭୁତ) | ଦୃଢ଼ତର | ଦ୍ରଢ଼ୀୟସ୍ | ଦୃଢ଼ତମ | ଦ୍ରଢ଼ିଷ୍ଠ |
| ଦୂର | ଦୂରତର | ଦବୀୟସ୍ | ଦୂରତମ | ଦବିଷ୍ଠ |
| ପାପିନ୍ | ପାପିତର | ପାପୀୟସ୍ | ପାପିତମ | ପାପିଷ୍ଠ |
| ପୃଥୁ (ମୋଟା) | ପୃଥୁତର | ପ୍ରଥୀୟସ୍ | ପୃଥୁତମ | ପ୍ରଥିଷ୍ଠ |
| ପ୍ରଶସ୍ୟ (ପ୍ରଶଂସନୀୟ) | ପ୍ରଶସ୍ୟତର | ଶ୍ରେୟସ୍, ଜ୍ୟାୟସ୍ | ପ୍ରଶସ୍ୟତମ | ଶ୍ରେଷ୍ଠ, ଜ୍ୟେଷ୍ଠ |
| ବହୁ | ବହୁତର | ଭୂୟସ୍ | ବହୁତମ | ଭୂୟିଷ୍ଠ |
| ବହୁଳ | ବହୁଳତର | ବଂହୀୟସ୍ | ବହୁଳତମ | ବଂହିଷ୍ଠ |
| ବଳ | ବଳବତ୍ତର | ବଳୀୟସ୍ | ବଳବତ୍ତମ | ବଳିଷ୍ଠ |
| ମୃଦୁ (କୋମଳ) | ମୃଦୁତର | ମ୍ରଦୀୟସ୍ | ମୃଦୁତମ | ମ୍ରଦିଷ୍ଠ |

| | | | |
|---|---|---|---|
| ଅଧି+ଇ | ଅଧ୍ୟାପି | ଅଧ୍ୟାପୟତି | (ପଢ଼ାଉଅଛି) |
| ରଞ୍ଜ୍ | ରଜି | ରଜୟତି | (ଶିକାର କରୁଅଛି) |
| | ରଞ୍ଜି | ରଞ୍ଜୟତି | (ରଙ୍ଗ କରୁଅଛି) |
| ଚଲ୍ | ଚାଳି | ଚାଳୟତି | (ଚାଳନ କରୁଅଛି) |
| | ଚଳି | ଚଳୟତି | (ଦୋହଲାଉ ଅଛି) |
| ସିଧ୍ | ସାଧି | ସାଧୟତି | (ସାଧନ କରୁଅଛି) |
| | ସେଧି | ସେଧୟତି | |
| ନି+ଶମ୍ | ନିଶାମି | ନିଶାମୟତି | (ଦେଖୁଅଛି) |
| | ନିଶମି | ନିଶମୟତି | (ଶୁଣୁଅଛି) |
| କ୍ଷୀ | କ୍ଷାପି | କ୍ଷାପୟତି | (କ୍ଷଣାଉଅଛି) |
| ଗୈ | ଗାପି | ଗାପୟତି | (ଗାନ କରାଉଅଛି) |
| ଗ୍ରହ୍ | ଗ୍ରାହି | ଗ୍ରାହୟତି | (ଗ୍ରହଣ କରାଉଅଛି) |
| ଘ୍ରା | ଘ୍ରାପି | ଘ୍ରାପୟତି | (ଶୁଙ୍ଘାଉଅଛି) |
| ଜ୍ଞା | ଜ୍ଞାପି | ଜ୍ଞାପୟତି | (ଜଣାଉଅଛି) |
| ଜି | ଜାପି | ଜାପୟତି | (ଜୟ କରାଉଅଛି) |
| ଦା | ଦାପି | ଦାପୟତି | (ଦିଆଉଅଛି) |
| ଦୃଶ୍ | ଦର୍ଶି | ଦର୍ଶୟତି | (ଦେଖାଉଅଛି) |
| ପତ୍ | ପାତି | ପାତୟତି | (ପକାଉଅଛି) |
| ପ୍ର+ବିଶ୍ | ପ୍ରବେଶି | ପ୍ରବେଶୟତି | (ପ୍ରବେଶ କରାଉଅଛି) |
| ଭୀ | ଭୀଷି | ଭୀଷୟତେ | (ଡରାଉଅଛି) |
| | ଭାୟି | ଭାୟୟତି | |
| ଭୁଜ୍ | ଭୋଜି | ଭୋଜୟତି | (ଖୁଆଉଅଛି) |
| ଲଭ୍ | ଲମ୍ଭି | ଲମ୍ଭୟତି | (ଲାଭ କରାଉଅଛି) |
| ଶୀ | ଶାୟି | ଶାୟୟତି | (ଶୁଣାଉଅଛି) |
| ସ୍ନା | ସ୍ନାପି | ସ୍ନାପୟତି | (ସ୍ନାନ କରାଉଅଛି) |
| ସ୍ମୃ | ସ୍ମାରି | ସ୍ମାରୟତି | (ସ୍ମରଣ କରାଉଅଛି) |
| ବ୍ରୂ, ବଚ୍ | ବାଚି | ବାଚୟତି | (କୁହାଉଅଛି) |

| | | | |
|---|---|---|---|
| ହନ୍ | ଘାତି | ଘାତୟତି | (ହତ୍ୟା କରାଉଅଛି) |
| ଆ+ହ୍ୱେ | ଆହ୍ୱାୟି | ଆହ୍ୱାୟୟତି | (ଡକାଉଅଛି) |
| ଋ | ଅର୍ପି | ଅର୍ପୟତି | (ଅର୍ପଣ କରୁଅଛି) |

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:— ରାମ ତା ଭାଇଙ୍କ ନେଇ ନଈବନ୍ୟା ଦେଖାଇଥିଲା । ଝିଅଦୁଇଟି ଏହି ସଭରେ ଗୀତ ଶୁଣାଇବେ । ହରିବାବୁ ଚାକର ଦ୍ୱାରା ଦୋକାନରୁ ଲୁଗା ଅଣାଇଥିଲେ । ଗୁରୁ ଛାତ୍ରମାନଙ୍କୁ ଧର୍ମବିଷୟରେ ପଢ଼ାଉଅଛନ୍ତି । ବୁଢ଼ୀମା ନୂଆ ଗପ ନାତିମାନଙ୍କୁ ଶୁଣାଉଅଛନ୍ତି । ମା ସାନପୁଅକୁ ସ୍ନାନ କରାଉଥିଲା । ସେ ଚାକର ଦ୍ୱାରା ସବୁ ଜିନିଷ କିଣାଇଲେ ।

୨ । ଏକପଦରେ ପ୍ରକାଶ କର:— ଜ୍ଞାତୁଂ ପ୍ରେରୟସି, ଜେତୁଂ ପ୍ରେରୟନ୍ତୁ, ହେତୁଂ ପ୍ରେରୟିଷ୍ୟାମି, ଦାତୁଂ ପ୍ରେରୟ ଓ ନେତୁଂ ପ୍ରେରୟାଣି ।

---

## ସନ୍ନନ୍ତ (ଇଚ୍ଛାର୍ଥକ କ୍ରିୟା)

ଦୁଇ କ୍ରିୟାର ଏକ କର୍ତ୍ତା ହେଲେ, ଇଚ୍ଛା ଅର୍ଥରେ କର୍ମବୋଧକ ଧାତୁ ପରେ ସନ୍ (ସ୍) ପ୍ରତ୍ୟୟ କଲେ ଯେଉଁ ଧାତୁ ନିଷ୍ପନ୍ନ ହୁଏ, ତାହାକୁ ସନ୍ନନ୍ତଧାତୁ କହନ୍ତି । ଯଥା:— ପଠ୍ + ସନ୍ — ପିପଠିଷ୍ (ସନ୍ନନ୍ତଧାତୁ); ପିପଠିଷତି (କ୍ରିୟାପଦ) । 'ଇଚ୍ଛାୟାମାତ୍ମନଃ ସଃ'

ମୂଳଧାତୁ ଯେଉଁ ପଦୀ ଥାଏ, ସନ୍ନନ୍ତଧାତୁ ସେହି ପଦୀ ହୁଏ । ଯଥା:—

ଗମ୍ (ପରସ୍ମୈପଦୀ) ଗନ୍ତୁମିଚ୍ଛତି—ଜିଗମିଷତି ।

ଲଭ୍ (ଆତ୍ମନେପଦୀ) ଲବ୍ଧୁମିଚ୍ଛତି — ଲିପ୍ସତେ ।

ଦା (ଉଭୟପଦୀ) ଦାତୁମିଚ୍ଛତି—ଦିତ୍ସତି, ଦିତ୍ସତେ ।

(ମାତ୍ର) ଜ୍ଞା, ଶ୍ରୁ, ସ୍ମୃ ଓ ଦୃଶ୍ ଧାତୁ ସନ୍ନନ୍ତରେ କେବଳ ଆତ୍ମନେପଦୀ ହୁଅନ୍ତି । ଜ୍ଞା — ଜ୍ଞାତୁମିଚ୍ଛତି — ଜିଜ୍ଞାସତେ । ଶ୍ରୁ—ଶ୍ରୋତୁମିଚ୍ଛତି — ଶୁଶ୍ରୂଷତେ ।

ସ୍ମୃ—ସ୍ମର୍ତ୍ତୁମିଚ୍ଛତି—ସୁସ୍ମୂର୍ଷତେ । ଦୃଶ୍—ଦ୍ରଷ୍ଟୁମିଚ୍ଛତି—ଦିଦୃକ୍ଷତେ ।

ଏକପଦରେ ପ୍ରକାଶ କଲାବେଳେ ଇଷ୍ ଧାତୁ ବାକ୍ୟରେ ଯେଉଁ ଲକାର, ପୁରୁଷ ଓ ବଚନରେ ବ୍ୟବହୃତ ହୋଇଥାଏ, ଇଚ୍ଛାର୍ଥକ (ସନ୍ନନ୍ତ) କ୍ରିୟାପଦଟି ସେହି ଲକାର, ପୁରୁଷ ଓ ବଚନରେ ବ୍ୟବହୃତ ହୁଏ । ଯଥା:—

ଗନ୍ତୁମିଚ୍ଛତୁ—ଜିଗମିଷତୁ (ଲୋଟ୍ ପ୍ରଥମପୁରୁଷ ଏକବଚନ) ।

ଗନ୍ତୁମ୍ ଐଚ୍ଛତ୍—ଅଜିଗମିଷତ୍ (ଲଙ୍ ପ୍ରଥମପୁରୁଷ ଏକବଚନ) ।

କେତେଗୁଡ଼ିଏ ଇଚ୍ଛାର୍ଥକ (ସନ୍ନନ୍ତ) ଧାତୁର ଲଟ୍ ପ୍ରଥମପୁରୁଷ ଏକବଚନରେ ନିଷ୍ପନ୍ନ କ୍ରିୟାପଦ । ଯଥା:—

| ମୂଳଧାତୁ | ସନ୍ନନ୍ତଧାତୁ | କ୍ରିୟାପଦ | ଅର୍ଥ |
|---|---|---|---|
| ଅଦ୍ | ଜିଘତ୍ସ | ଜିଘତ୍ସତି | (ଖାଇବାକୁ ଇଚ୍ଛା କରୁଅଛି) |
| ଅଧି+ଇ | ଅଧିଜିଗାଂସ | ଅଧିଜିଗାଂସତେ | (ପଢ଼ିବାକୁ ” ) |
| କୃ | ଚିକୀର୍ଷ | ଚିକୀର୍ଷତି | (କରିବାକୁ ” ) |
| କ୍ରୀ | ଚିକ୍ରୀଷ | ଚିକ୍ରୀଷତି | (କିଣିବାକୁ ” ) |
| ଗ୍ରହ୍ | ଜିଘୃକ୍ଷ | ଜିଘୃକ୍ଷତି | (ଗ୍ରହଣ କରିବାକୁ ” ) |
| ଘ୍ରା | ଜିଘ୍ରାସ | ଜିଘ୍ରାସତି | (ଶୁଙ୍ଘିବାକୁ ” ) |
| ଜି | ଜିଗୀଷ | ଜିଗୀଷତି | (ଜୟ କରିବାକୁ ” ) |
| ତ୍ୟଜ୍ | ତିତ୍ୟକ୍ଷ | ତିତ୍ୟକ୍ଷତି | (ତ୍ୟାଗ କରିବାକୁ ” ) |
| ତୃ | ତିତୀର୍ଷ | ତିତୀର୍ଷତି | (ପାର ହେବାକୁ ” ) |
| ନୀ | ନିନୀଷ | ନିନୀଷତି | (ନେବାକୁ ” ) |
| ପଚ୍ | ପିପକ୍ଷ | ପିପକ୍ଷତି | (ପାକ କରିବାକୁ ” ) |
| ପା | ପିପାସ | ପିପାସତି | (ପିଇବାକୁ ” ) |
| ପ୍ରଚ୍ଛ୍ | ପିପୃଚ୍ଛିଷ | ପିପୃଚ୍ଛିଷତି | (ପଚାରିବାକୁ ” ) |
| ବଦ୍ | ବିବଦିଷ | ବିବଦିଷତି | (କହିବାକୁ ” ) |
| ବ୍ରୂ | ବିବକ୍ଷ | ବିବକ୍ଷତି | (କହିବାକୁ ” ) |
| ଭୂ | ବୁଭୂଷ | ବୁଭୂଷତି | (ହେବାକୁ ” ) |
| ରୁଦ୍ | ରୁରୁଦିଷ | ରୁରୁଦିଷତି | (କାନ୍ଦିବାକୁ ” ) |

| | | | |
|---|---|---|---|
| ଶୀ | ଶିଶୟିଷ | ଶିଶୟିଷତେ | (ଶୋଇବାକୁ ଇଚ୍ଛାକରୁଅଛୁ) |
| ସ୍ଥା | ତିଷ୍ଠାସ | ତିଷ୍ଠାସତି | (ରହିବାକୁ ” ) |
| ହନ୍ | ଜିଘାଂସ | ଜିଘାଂସତି | (ହତ୍ୟା କରିବାକୁ ” ) |
| ହୃ | ଜିହୀର୍ଷ | ଜିହୀର୍ଷତି | (ହରଣ କରିବାକୁ ” ) |

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:—ସେମାନେ ଭଲ ପିଲା ହେବା ପାଇଁ ଇଚ୍ଛା କରୁଅଛନ୍ତି । ଦୁଷ୍ୟନ୍ତ ବଣରେ ହରିଣମାନଙ୍କୁ ମାରିବାକୁ ଇଚ୍ଛା କରିଥିଲେ । ନିଶ୍ଚୟ ରାଜା ଶତ୍ରୁମାନଙ୍କୁ ଜୟ କରିବାକୁ ଇଚ୍ଛାକରିବେ । ଆମ୍ଭେମାନେ ତୁମ୍ଭଠାରୁ ଏହା ଶୁଣିବାକୁ ଇଚ୍ଛା କରୁଅଛୁ । ଶୋଷିଲୋକ ପାଣି ପିଇବାକୁ ଇଚ୍ଛା କରୁଥିଲା ।

୨ । ଏକପଦରେ ପ୍ରକାଶ କର:—ଗନ୍ତୁମିଚ୍ଛାମି, ନେତୁମିଚ୍ଛନ୍ତି, ପକ୍ତୁମିଚ୍ଛତୁ, ସ୍ଥାତୁମିଚ୍ଛେତ୍, ଜେତୁମିଚ୍ଛନ୍ତୁ ।

୩ । ସଂଶୋଧନ କର:—ଅହଂ ମାତାଂ ଦିଦୃକ୍ଷାମି । ତେ ଜଳଂ ପିପାସତୁ । ଛାତ୍ରଃ ଶିକ୍ଷକଂ ବିବଦିସନ୍ତୁ । ବୟଂ ଗ୍ରାମଂ ଜିଗମିଷନ୍ତି ।

---

## ଯଙନ୍ତ

ବ୍ୟଞ୍ଜନବର୍ଣ୍ଣ ଆଦିରେ ଥିବା ଏକସ୍ୱରବିଶିଷ୍ଟ ଧାତୁମାନଙ୍କ ପରେ ଅତିଶୟ ଓ ପୁନଃ ପୁନଃ ଅର୍ଥରେ ଯଙ୍ (ଯ) ପ୍ରତ୍ୟୟ କଲେ ଯଙନ୍ତ ଧାତୁ ନିଷ୍ପନ୍ନ ହୁଏ ଏବଂ ଯଙନ୍ତରେ ମୂଳ ଧାତୁର ଦ୍ୱିତ୍ୱ ହୁଏ । ଯଥା:—ପଠ୍+ଯଙ୍—ପାପଠ୍ୟ (ଯଙନ୍ତ ଧାତୁ) ।

'ଅତିଶୟେ ହଲାଦେର୍ଯଙ୍ ଦ୍ୱିଶ୍ଚ'

ଯଙନ୍ତ ଧାତୁ ଆତ୍ମନେପଦୀ । ଯଥା:—ଅତିଶୟେନ ପୁନଃ ପୁନଃ ବା ପଠତି – ପାପଠ୍ୟତେ (କ୍ରିୟାପଦ) ।

ଯଙ୍ ପ୍ରତ୍ୟୟ କେବଳ ଲଟ୍, ବିଧିଲିଙ୍, ଲୋଟ୍ ଓ ଲଙ୍ ଲକାରରେ ରହେ, ଅନ୍ୟ ଲକାରମାନଙ୍କରେ ଲୋପ ହୁଏ ।

କେତେକ ଯଙନ୍ତ ଧାତୁର ଲଟ୍ ପ୍ରଥମପୁରୁଷ ଏକବଚନରେ ନିଷ୍ପନ୍ନ କ୍ରିୟାପଦ । ଯଥା:—

| ମୂଳଧାତୁ | ଯଙନ୍ତଧାତୁ | କ୍ରିୟାପଦ | ଅର୍ଥ |
|---|---|---|---|
| ଗମ୍ | ଜଙ୍ଗମ୍ୟ | ଜଙ୍ଗମ୍ୟତେ | (ଅତିଶୟ ବା ପୁନଃ ପୁନଃ ଗମନ କରୁଅଛି) |
| ବଦ୍ | ବାବଦ୍ୟ | ବାବଦ୍ୟତେ | ( ” ” କହୁଅଛି) |
| ଗୈ | ଜେଗୀୟ | ଜେଗୀୟତେ | ( ” ” ଗାନ କରୁଅଛି) |
| ଦା | ଦେଦୀୟ | ଦେଦୀୟତେ | ( ” ” ଦେଉଅଛି) |
| ନୀ | ନେନୀୟ | ନେନୀୟତେ | ( ” ” ନେଉଅଛି) |
| ଜ୍ୱଲ୍ | ଜାଜ୍ୱଲ୍ୟ | ଜାଜ୍ୱଲ୍ୟତେ | ( ” ” ଜଳୁଅଛି) |
| ଶୀ | ଶାଶଯ୍ୟ | ଶାଶଯ୍ୟତେ | ( ” ” ଶୋଉଅଛି) |
| ଶ୍ରୁ | ଶୋଶ୍ରୂୟ | ଶୋଶ୍ରୂୟତେ | ( ” ” ଶୁଣୁଅଛି) |
| ସ୍ଥା | ତେଷ୍ଠୀୟ | ତେଷ୍ଠୀୟତେ | ( ” ” ରହୁଅଛି) |
| ପା | ପେପୀୟ | ପେପୀୟତେ | ( ” ” ପିଉଅଛି) |

### ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:—ମୁଁ ତୁମ କଥା ବାରମ୍ବାର ଶୁଣୁଅଛି । ସେମାନେ ସିନେମା ଥରକୁ ଥର ଦେଖନ୍ତି । ବାଳକମାନେ ପୁନଃ ପୁନଃ ଖେଳୁଥିଲେ । ଗୋଟିଏ କଥାକୁ ବାରମ୍ବାର କହୁଥିବା ଲୋକ ଉପରେ ସେମାନେ ରାଗିଥିଲେ । ନିଆଁ ଅତିଶୟ ଜଳୁଅଛି ।

୨ । ଏକପଦରେ ପ୍ରକାଶ କର:—ଅତିଶୟେନ ଅପଠତ୍ । ପୁନଃ ପୁନଃ ପଶ୍ୟତି । ଭୃଶମକରୋତ୍ । ପୁନଃ ପୁନଃ ପିବସି । କୁଟିଳଂ ଗଚ୍ଛତି ।

---

## ନାମଧାତୁ

ବିଶେଷ ବିଶେଷ ଅର୍ଥରେ ଶବ୍ଦ (ପ୍ରାତିପଦିକ) ରୁ ଉତ୍ତର କ୍ୟଚ୍ ପ୍ରଭୃତି ପ୍ରତ୍ୟୟ କଲେ ଯେଉଁ ଧାତୁ ନିଷ୍ପନ୍ନ ହୁଏ, ତାହାକୁ ନାମଧାତୁ କହନ୍ତି । ଯଥା: —ପୁତ୍ର+କ୍ୟଚ୍ (ଯ୍)—‘ପୁତ୍ରୀୟ’ (ନାମଧାତୁ), ପୁତ୍ରୀୟ+ଲଟ୍ ତି—‘ପୁତ୍ରୀୟତି’ (କ୍ରିୟାପଦ) ।

କ୍ୟଚ୍, ଣିଚ୍, କ୍ୱିପ୍ ଓ କାମ୍ୟ ପ୍ରତ୍ୟୟାନ୍ତ ନାମଧାତୁ ପରସ୍ମୈପଦୀ ଏବଂ କ୍ୟଙ୍ ପ୍ରତ୍ୟୟାନ୍ତ ନାମଧାତୁ ଆତ୍ମନେପଦୀ ।

୧ । କ୍ୟଚ୍ (ଯ)—

(କ) ନିଜ ଇଚ୍ଛା ଅର୍ଥରେ — ଆତ୍ମନଃ ପୁତ୍ରମିଚ୍ଛତି = ପୁତ୍ରୀୟତି । ଆତ୍ମନଃ ବନ୍ଧୁମିଚ୍ଛତି = ବନ୍ଧୂୟତି । ଆତ୍ମନଃ ଅଶନମିଚ୍ଛତି = ଅଶନୀୟତି । ଆତ୍ମନଃ ଧନମିଚ୍ଛତି = ଧନୀୟତି । ଆତ୍ମନଃ ଉଦକମିଚ୍ଛତି = ଉଦକୀୟତି ।

(ଖ) ଖାଇବା ପାଇଁ ଇଚ୍ଛା ଅର୍ଥରେ—ଅଶନଂ ଭୋକ୍ତୁମିଚ୍ଛତି = ଅଶନାୟତି ।

(ଗ) ଲୋଭ ଅର୍ଥରେ—ଧନମିଚ୍ଛତି = ଧନାୟତି ।

(ଘ) ତୃଷା ଅର୍ଥରେ — ଉଦକମିଚ୍ଛତି = ଉଦନ୍ୟତି ।

(ଙ) କରିବା ଅର୍ଥରେ — ନମଃ କରୋତି = ନମସ୍ୟତି । ତପଃ କରୋତି = ତପସ୍ୟତି । ବରିବଃ (ସେବା) କରୋତି = ବରିବସ୍ୟତି ।

(ଚ) ଆଚରଣ ଅର୍ଥରେ କର୍ମବାଚକ ଉପମାନରୁ ଉତ୍ତର — ପୁତ୍ରମିବ ଆଚରତି = ପୁତ୍ରୀୟତି । ସଖାୟମିବ ଆଚରତି = ସଖୀୟତି । ଶତ୍ରୁମିବ ଆଚରତି = ଶତ୍ରୂୟତି । ପିତରମିବ ଆଚରତି = ପିତ୍ରୀୟତି । ମାତରମିବ ଆଚରତି = ମାତ୍ରୀୟତି । ଭ୍ରାତରମିବ ଆଚରତି = ଭ୍ରାତ୍ରୀୟତି ।

୨ । କାମ୍ୟ — ନିଜର ଇଚ୍ଛା ଅର୍ଥ ବୁଝାଇଲେ — ଆତ୍ମନଃ ପୁତ୍ରମିଚ୍ଛତି = ପୁତ୍ରକାମ୍ୟତି । ଆତ୍ମନଃ ଧନମିଚ୍ଛତି = ଧନକାମ୍ୟତି । ଆତ୍ମନଃ ଯଶଃ ଇଚ୍ଛତି = ଯଶସ୍କାମ୍ୟତି । ଆତ୍ମନଃ ପୟଃ ଇଚ୍ଛତି = ପୟସ୍କାମ୍ୟତି ।

୩ । ଣିଚ୍ (ଇ)—କରିବା ଅର୍ଥରେ—ପ୍ରଶ୍ନଂ କରୋତି = ପ୍ରଶ୍ନୟତି । ପବିତ୍ରଂ କରୋତି — ପବିତ୍ରୟତି । ଧବଳଂ କରୋତି = ଧବଳୟତି । ପୃଥୁଂ କରୋତି = ପ୍ରଥୟତି । ମୃଦୁଂ କରୋତି = ମ୍ରଦୟତି । ଦୃଢ଼ଂ କରୋତି = ଦ୍ରଢ଼ୟତି । ସ୍ଥୂଳଂ କରୋତି = ସ୍ଥବୟତି । ଦୂରଂ କରୋତି = ଦବୟତି । ଅନ୍ତିକଂ କରୋତି — ନେଦୟତି । ବହୁଳଂ କରୋତି = ବଂହୟତି ।

୪ । କ୍ୱିପ୍ (କ୍ୱିପ୍‌ର କିଛି ଚିହ୍ନ ରହେ ନାହିଁ ।) — ଆଚରଣ ଅର୍ଥରେ — ପୁତ୍ରଃ ଇବ ଆଚରତି = ପୁତ୍ରତି । ସଖା ଇବ ଆଚରତି = ସଖାୟତି । ଗୁରୁଃ ଇବ ଆଚରତି = ଗୁରବତି । ପିତା ଇବ ଆଚରତି = ପିତରତି ।

୫ । କ୍ୟଙ୍ (ଯ୍)—

(କ) ଆଚରଣ ଅର୍ଥରେ କର୍ତ୍ତୃବାଚକ ଉପମାନରୁ ଉତ୍ତର—ପୁତ୍ରଃ ଇବ ଆଚରତି=ପୁତ୍ରାୟତେ । ସଖା ଇବ ଆଚରତି=ସଖୀୟତେ । ଦୁହିତା ଇବ ଆଚରତି=ଦୁହିତ୍ରାୟତେ । ରାଜା ଇବ ଆଚରତି=ରାଜାୟତେ । ଚନ୍ଦ୍ରମା ଇବ ଆଚରତି=ଚନ୍ଦ୍ରମାୟତେ । ପୟଃ ଇବ ଆଚରତି=ପୟାୟତେ, ପୟସ୍ୟତେ ।

(ଖ) କରିବା ଅର୍ଥରେ—ଶବ୍ଦଂ କରୋତି=ଶବ୍ଦାୟତେ । ବୈରଂ କରୋତି=ବୈରାୟତେ । କଳହଂ କରୋତି=କଳହାୟତେ ।

(ଗ) ଅନୁଭବ ଅର୍ଥରେ—ସୁଖମନୁଭବତି=ସୁଖାୟତେ । ଦୁଃଖମ-ନୁଭବତି=ଦୁଃଖାୟତେ ।

(ଘ) ଉଦ୍‌ବମନ (ଉଦ୍‌ଗାରିବା) ଅର୍ଥରେ—ଫେନମୁଦ୍‌ବମତି= ଫେନାୟତେ । ଧୂମମୁଦ୍‌ବମତି=ଧୂମାୟତେ । ବାଷ୍ପମୁଦ୍‌ବମତି=ବାଷ୍ପାୟତେ ।

(ଙ) ଅଭୂତତଦ୍ଭାବ ଅର୍ଥରେ—ଅମନ୍ଦଃ ମନ୍ଦଃ ଭବତି=ମନ୍ଦାୟତେ । ଅପଣ୍ଡିତଃ ପଣ୍ଡିତଃ ଭବତି=ପଣ୍ଡିତାୟତେ । ଅଚପଳଃ ଚପଳଃ ଭବତି=ଚପଳାୟତେ ।

(ଚ) ଉଦ୍‌ଗାରପୂର୍ବକ ଚର୍ବଣ ଅର୍ଥରେ—ରୋମନ୍ଥଂ ବର୍ତ୍ତୟତି= ରୋମନ୍ଥାୟତେ ।

## ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:—ପରିଶ୍ରମ ଦେହକୁ ଦୃଢ଼ କରେ । ଦରିଦ୍ର ବାଳକଟି ଦୁଃଖ ଅନୁଭବ କରୁଅଛି । ସେ ଶତ୍ରୁକୁ ବନ୍ଧୁ ପରି ମନେ କରୁଅଛି । ଶିକ୍ଷକ ଛାତ୍ରମାନଙ୍କୁ ପ୍ରଶ୍ନ କରିଥିଲେ । ମୁଁ ବର୍ତ୍ତମାନ ପାଣି ପିଇବାକୁ ଇଚ୍ଛା କରିବ । ଧୂମୋଦ୍‌ଗାରୀ (ଧୂମାୟମାନ) ଅଗ୍ନି ଉଜ୍ଜ୍ୱଳ ନୁହେଁ । ଗୋବର ଭୂମିକୁ ପବିତ୍ର କରେ ।

୨ । ଭେଦ ଦେଖାଅ:—ଅଶନାୟତି, ଅଶନୀୟତି । ପୁତ୍ରୀୟତି, ପୁତ୍ରାୟତେ । ସଖୀୟତି, ସଖୀୟତେ । ଉଦନ୍ୟତି, ଉଦକୀୟତି ।

୩ । ଏକପଦରେ ପ୍ରୟୋଗ କର: — ତପଃ କୁର୍ଯ୍ୟାତ୍ । ଅନ୍ତକଂ କରୋମି । ଶବ୍ଦଂ କୁରୁ । ଅଦୁର୍ମନାଃ ଦୁର୍ମନାଃ ଭବତ । ଗୁରୁଃ ଇବ ଆଚରତ ।

୪ । ସଂଶୋଧନ କର: — ସଜୀବକୋ ପଶୁଷୁ ରଜାୟତ । ପୁତ୍ରଃ ପିତରଂ ନମସ୍ୟତ । ଆମିକ୍ଷା (ଛେନା) ଶରୀରଂ ସ୍ଥୂଳସ୍ୟତ । ଆଧୁନା ଛାତ୍ରାଃ ଚପଳାୟନ୍ତ ।

---

# ପରସ୍ମୈପଦ ଓ ଆତ୍ମନେପଦବିଧାନ

## ପରସ୍ମୈପଦବିଧାନ

### ରମ୍ ଧାତୁ

ବି+ରମ୍, ଆ+ରମ୍ ଓ ପରି+ରମ୍ ଧାତୁ ପରସ୍ମୈପଦୀ ହୁଏ । ଯଥା: — ବିରମତି, ଆରମତି ଓ ପରିରମତି । 'ବ୍ୟାଙ୍ ପରିଭ୍ୟୋ ରମଃ'

### କୃ ଧାତୁ

ଅନୁ+କୃ ଓ ପରା+କୃ ଧାତୁ ପରସ୍ମୈପଦୀ ହୁଏ । ଯଥା:—ଅନୁକରୋତି (ଅନୁକରଣ କରୁଅଛି) ଓ ପରାକରୋତି (ଅଗ୍ରାହ୍ୟ କରୁଅଛି) ।

'ଅନୁପରାଭ୍ୟାଂ କୃଞଃ'

### କ୍ଷିପ୍ ଧାତୁ

ଅଭି+କ୍ଷିପ୍, ପ୍ରତି+କ୍ଷିପ୍ ଓ ଅତି+କ୍ଷିପ୍ ଧାତୁ ପରସ୍ମୈପଦୀ ହୁଏ । ଯଥା: — ଅଭିକ୍ଷିପତି, ପ୍ରତିକ୍ଷିପତି ଓ ଅତିକ୍ଷିପତି । 'ଅଭିପ୍ରତ୍ୟତିଭ୍ୟଃ କ୍ଷିପଃ'

### ବହ୍ ଧାତୁ

ପ୍ର+ବହ୍ ଧାତୁ ପରସ୍ମୈପଦୀ ହୁଏ । ଯଥା: — ପ୍ରବହତି ।

※ ନିମ୍ନଲିଖିତ ଧାତୁଗୁଡ଼ିକ ଣିଜନ୍ତରେ କେବଳ ପରସ୍ମୈପଦୀ ହୁଅନ୍ତି ।

ବୁଧ୍ — ବୋଧୟତି    ଖାଦ୍ — ଖାଦୟତି

---

※ ଣିଜନ୍ତରେ ବୁଧ୍, ଯୁଧ୍, ଜନ୍, ନଶ୍, ସ୍ରୁ, ପ୍ରୁ, ଅଧି+ଇ ଓ ଦ୍ରୁ ଧାତୁ, ଅଦ୍ ବ୍ୟତୀତ ଭୋଜନାର୍ଥ ଧାତୁ ଏବଂ ଚଳନାର୍ଥ ଧାତୁ ପରସ୍ମୈପଦୀ ହୁଅନ୍ତି; ମାତ୍ର ଅଦ୍‌ର 'ଆଦୟତି' ଓ 'ଆଦୟତେ' ହୁଏ ।

ଯୁଧ୍ — ଯୋଧୟତି
ଜନ୍—ଜନୟତି
ନଶ୍—ନାଶୟତି
ସ୍ରୁ — ସ୍ରାବୟତି
ପ୍ରୁ -- ପ୍ରାବୟତି
ଅଧି+ଇ—ଅଧ୍ୟାପୟତି
ଦ୍ରୁ — ଦ୍ରାବୟତି
ଭୁଜ୍ — ଭୋଜୟତି
ଗିଲ୍ — ଗିଲୟତି
ଭକ୍ଷ୍ — ଭକ୍ଷୟତି
ଅଶ୍ — ଆଶୟତି
ଗମ୍ — ଗମୟତି
ଚଲ୍—ଚଲୟତି
କମ୍ପ୍—କମ୍ପୟତି

## ଆତ୍ମନେପଦବିଧାନ

### ଜି ଧାତୁ

ବି+ଜି ଓ ପରା+ଜି ଧାତୁ ଆତ୍ମନେପଦୀ ହୁଏ । ଯଥା: — ବିଜୟତେ ଓ ପରାଜୟତେ । 'ବିପରାଭ୍ୟାଂ ଜେଃ'

### ବିଶ୍ ଧାତୁ

ନି+ବିଶ୍ ଧାତୁ ଆତ୍ମନେପଦୀ ହୁଏ । ଯଥା: — ନିବିଶତେ । 'ନେର୍ବିଶଃ'

### କ୍ରୀ ଧାତୁ

ପରି+କ୍ରୀ, ବି+କ୍ରୀ ଓ ଅବ+କ୍ରୀ ଧାତୁ ଆତ୍ମନେପଦୀ ହୁଏ । ଯଥା:— ପରିକ୍ରୀଣୀତେ, ବିକ୍ରୀଣୀତେ, ଅବକ୍ରୀଣୀତେ । 'ପରିବ୍ୟବେଭ୍ୟଃ କ୍ରିୟଃ'

### କ୍ରୀଡ଼୍ ଧାତୁ

ଆ+କ୍ରୀଡ଼୍, ସମ୍+କ୍ରୀଡ଼୍, ଅନୁ+କ୍ରୀଡ଼୍ ଓ ପରି+କ୍ରୀଡ଼୍ ଧାତୁ ଆତ୍ମନେପଦୀ ହୁଏ । ଯଥା: — ଆକ୍ରୀଡ଼ତେ; ସଂକ୍ରୀଡ଼ତେ, ଅନୁକ୍ରୀଡ଼ତେ ଓ ପରିକ୍ରୀଡ଼ତେ (ଖେଳୁଅଛି) । 'କ୍ରୀଡ଼ୋଽନୁସଂପରିଭ୍ୟଶ୍ଚ'

(କିନ୍ତୁ) ସମ୍+କ୍ରୀଡ଼୍ ଧାତୁର ଅର୍ଥ ଶବ୍ଦ କରିବା ହେଲେ ପରସ୍ମୈପଦୀ ହୁଏ । ଯଥା: — ଶକଟଚକ୍ରଂ ସଂକ୍ରୀଡ଼ତି (ଶବ୍ଦ କରୁଅଛି) ।

## ଦା ଧାତୁ

ଆ+ଦା ଧାତୁ ବିସ୍ତାରଭିନ୍ନ ଅର୍ଥରେ ଆତ୍ମନେପଦୀ ହୁଏ । ଯଥା: — ଆଦଦ୍ଧେ (ଆଦାନ୍ତୁ କରୁଅଛି); କିନ୍ତୁ ବିସ୍ତାର ଅର୍ଥରେ – ବ୍ୟାଦଦାତି (ବିସ୍ତାର କରୁଅଛି) । 'ଆଙୋ ଦା ନ ଚ୍ଛ ବିସ୍ତାରେ'

## କୃ ଧାତୁ

ଅପ୍+କୃ ଧାତୁ ଆତ୍ମନେପଦୀ ହୁଏ ଓ ଧାତୁପୂର୍ବରେ 'ସ୍' ର ଆଗମ ହୁଏ, ଯଦି ପକ୍ଷୀ କିମ୍ବା ଚତୁଷ୍ପଦ ଜନ୍ତୁ କର୍ତ୍ତା ହୁଅନ୍ତି ଏବଂ ଆହାର ଅନ୍ୱେଷଣ, ହର୍ଷପ୍ରକାଶ ଓ ବାସଗ୍ରହଣ ଇଚ୍ଛା ପ୍ରକାଶିତ ହେଉଥାଏ । ଯଥା:—କୁକ୍କୁଟଃ ଅପସ୍କିରତେ (ଖୋଳୁଅଛି) (ଆହାରାନ୍ୱେଷଣାର୍ଥମ୍) । ବୃଷଭଃ ଅପସ୍କିରତେ (ହର୍ଷପ୍ରକାଶାର୍ଥମ୍) । ଶ୍ୱା ଅପସ୍କିରତେ (ବାସଗ୍ରହଣେଚ୍ଛୟା) ।

## ହ୍ୱେ ଧାତୁ

ଆ+ହ୍ୱେ ଧାତୁ ସ୍ପର୍ଦ୍ଧାପୂର୍ବକ ଆହ୍ୱାନ ଅର୍ଥରେ ଆତ୍ମନେପଦୀ ହୁଏ । ଯଥା:—ଆହ୍ୱୟତେ (ସ୍ପର୍ଦ୍ଧା କରୁଅଛି) । 'ସ୍ପର୍ଦ୍ଧାୟାମାଙଃ'

## ସ୍ଥା ଧାତୁ

(କ) ସମ୍+ସ୍ଥା, ଅବ+ସ୍ଥା, ପ୍ର+ସ୍ଥା ଓ ବି+ସ୍ଥା ଧାତୁ ଆତ୍ମନେପଦୀ ହୁଏ । ଯଥା:—ସନ୍ତିଷ୍ଠତେ, ଅବତିଷ୍ଠତେ, ପ୍ରତିଷ୍ଠତେ ଓ ବିତିଷ୍ଠତେ ।

'ସମବପ୍ରବିଭ୍ୟଃ ସ୍ଥଃ'

(ଖ) ଉତ୍+ସ୍ଥା ଧାତୁ ଉତ୍ଥାନ ଅର୍ଥ ନ ହେଲେ ଆତ୍ମନେପଦୀ ହୁଏ । ଯଥା: – ଉତ୍ତିଷ୍ଠତେ (ଲାଭ ବା କାମନା କରୁଅଛି); କିନ୍ତୁ ଉତ୍ଥାନ ଅର୍ଥ ହେଲେ ପରସ୍ମୈପଦୀ ହୁଏ । ଯଥା: – ଉତ୍ତିଷ୍ଠତି । 'ଉଦୋଽନୂର୍ଦ୍ଧ୍ୱକର୍ମଣି'

(ଗ) ଉପ+ସ୍ଥା ଧାତୁ ନିମ୍ନଲିଖିତ ଅର୍ଥରେ ଆତ୍ମନେପଦୀ ହୁଏ ।

୧ । ମନ୍ତ୍ର କରିବା ଅର୍ଥରେ – ବ୍ରାହ୍ମଣଃ ଗାୟତ୍ର୍ୟା ଶିବମୁପତିଷ୍ଠତେ ।

୨ । ଦେବପୂଜା ଅର୍ଥରେ – ଭକ୍ତଃ ଶିବମୁପତିଷ୍ଠତେ (ପୂଜା କରୁଅଛି) ।

୩ । ମୈତ୍ରୀକରଣ ଅର୍ଥରେ – ରାମଃ ଗୋବିନ୍ଦମୁପତିଷ୍ଠତେ (ମିତ୍ରତାକରୁଅଛି)।

୪। ମିଳନ ଅର୍ଥରେ – ଗଙ୍ଗା ଯମୁନାମୁପଗଚ୍ଛତେ (ମିଶିଅଛି)।

୫। ମାର୍ଗ ଅର୍ଥରେ—ଅୟଂ ମାର୍ଗଃ ନଦୀମୁପଗଚ୍ଛତେ (ନଈକି ପଡ଼ିଅଛି)

## ଚର୍ ଧାତୁ

(କ) ଉତ୍+ଚର୍ ଧାତୁ ସକର୍ମକ ହେଲେ ଆତ୍ମନେପଦୀ ହୁଏ। ଯଥା:— ଶିଷ୍ୟଃ ଗୁରୁବାକ୍ୟମୁଚ୍ଚରତେ (ଉଲ୍ଲଂଘନ କରୁଅଛି)। 'ଉଦଶ୍ଚରଃ ସକର୍ମକାତ୍'

(ଖ) ସମ୍+ଚର୍ ଧାତୁ ତୃତୀୟା ବିଭକ୍ତ୍ୟନ୍ତ ପଦଯୋଗ ହେଲେ ଆତ୍ମନେ-ପଦୀ ହୁଏ। ଯଥା: – ରାଜା ରଥେନ ସଞ୍ଚରତେ। 'ସମସ୍ତୃତୀୟାଯୁକ୍ତାତ୍'

## ଗମ୍ ଧାତୁ

ସମ୍+ଗମ୍ ଧାତୁ ଅକର୍ମକ ହେଲେ ଆତ୍ମନେପଦୀ ହୁଏ। ଯଥା: – ତବ ବାକ୍ୟଂ ନ ସଙ୍ଗଚ୍ଛତେ।

## କ୍ରମ୍ ଧାତୁ

(କ) ଆ+କ୍ରମ୍ ଧାତୁ ଜ୍ୟୋତିଃପଦାର୍ଥର ଊର୍ଦ୍ଧ୍ୱଗମନ ବୁଝାଇଲେ ଆତ୍ମନେପଦୀ ହୁଏ। ଯଥା:—ସୂର୍ଯ୍ୟଃ ଆକ୍ରମତେ; କିନ୍ତୁ ଧୂମଃ ଆକ୍ରାମତି। (ଧୂମ ଜ୍ୟୋତିହୀନ)। 'ଆଙୋଜ୍ୟୋତିରୁଦ୍‌ଗମନେ'

(ଖ) ପ୍ର+କ୍ରମ୍ ଓ ଉପ+କ୍ରମ୍ ଧାତୁ ଆରମ୍ଭ ଅର୍ଥ ହେଲେ ଆତ୍ମନେପଦୀ ହୁଏ। ଯଥା: – ପ୍ରକ୍ରମତେ ଓ ଉପକ୍ରମତେ (ଆରମ୍ଭ କରୁଅଛି)।

'ପ୍ରୋପାଭ୍ୟାଂ ପ୍ରାରମ୍ଭେ'

(ଗ) ବି+କ୍ରମ୍ ଧାତୁ ପଦବିକ୍ଷେପ ଅର୍ଥରେ ଆତ୍ମନେପଦୀ ହୁଏ। ଯଥା:— ଅଶ୍ୱଃ ସମ୍ୟକ୍ ବିକ୍ରମତେ (ପାଦ ପକାଉଅଛି)। 'ବେଃ ପାଦବିହରଣେ'

## ଜ୍ଞା ଧାତୁ

(କ) ଅପ+ଜ୍ଞା ଧାତୁ ଅପଲାପ (ନ ମାନିବା) ଅର୍ଥରେ ଆତ୍ମନେପଦୀ ହୁଏ। ଯଥା: – ସଃ ଶତମପଜାନୀତେ (ଶତବାର ମାନୁ ନାହିଁ)।

'ଅପହ୍ନବେ ଜ୍ଞଃ'

(ଖ)ସମ୍+ଜ୍ଞା ଧାତୁ ସ୍ମରଣ ଅର୍ଥ ନ ହେଲେ ଆତ୍ମନେପଦୀ ହୁଏ। ଯଥା:- ସ ଶତଂ ସଂଜାନୀତେ ( ଇଚ୍ଛା କରୁଅଛି)।

## ଯମ୍ ଧାତୁ

ଉପ+ଯମ୍ ଧାତୁ ବିବାହ ଅର୍ଥରେ ଆତ୍ମନେପଦୀ ହୁଏ । ଯଥା: — ରାମଃ ସୀତାମୁପଯଚ୍ଛତେ (ବିବାହ କରୁଅଛନ୍ତି) । 'ଉପାଦ୍‌ଯମଃ ସ୍ୱୀକରଣେ'

## ହନ୍ ଧାତୁ

ଆ+ହନ୍ ଧାତୁ ଅକର୍ମକ ହେଲେ ଓ ନିଜର ଅଙ୍ଗବାଚକ ଶବ୍ଦ କର୍ମ ହେଲେ ଆତ୍ମନେପଦୀ ହୁଏ । ଯଥା: — ରାମଃ ତସ୍ୟ ଶିରସି ଆହତେ(ଅକର୍ମକ) ଓ ବୃଦ୍ଧଃ ସ୍ୱମସ୍ତକମାହତେ (ସ୍ୱାଙ୍ଗକର୍ମକ) ।

## ତପ୍ ଧାତୁ

ଉତ୍+ତପ୍ ଧାତୁ ଅକର୍ମକ ହେଲେ ଓ ନିଜର ଅଙ୍ଗବାଚକ ଶବ୍ଦ କର୍ମ ହେଲେ ଆତ୍ମନେପଦୀ ହୁଏ । ଯଥା: — ସୂର୍ଯ୍ୟଃ ଉତ୍ତପତେ (ଅକର୍ମକ) ଓ ବୃଦ୍ଧଃ ସ୍ୱକରମୁତ୍ତପତେ (ସ୍ୱାଙ୍ଗକର୍ମକ) ।

(କିନ୍ତୁ) ତପସ୍ ଶବ୍ଦ କର୍ମ ହେଲେ ଉପସର୍ଗବିହୀନ ତପ୍ ଧାତୁ ଆତ୍ମନେପଦୀ ହୁଏ ଓ ଧାତୁ ଶେଷରେ ଯ ପ୍ରତ୍ୟୟ ହୁଏ । ଯଥା: — ମୁନିଃ ତପଃ ତପ୍ୟତେ ।

## ବଦ୍ ଧାତୁ

ବି+ବଦ୍ ଧାତୁ ପରସ୍ପର ବିବାଦ ଅର୍ଥରେ ଆତ୍ମନେପଦୀ ହୁଏ— ଯଥା: — ବିବଦନ୍ତେ (ବିବାଦ କରୁଅଛନ୍ତି) । 'ବିମତୌ ବଦଃ'

## ଭୁଜ୍ ଧାତୁ

ଭୁଜ୍ ଧାତୁ ଭୋଜନ ଓ ଉପଭୋଗ ଅର୍ଥରେ ଆତ୍ମନେପଦୀ ହୁଏ । ଯଥା:—ସଃ ଅନ୍ନଂ ଭୁଙ୍କ୍ତେ । ଧନୀ ସୁଖଂ ଭୁଙ୍କ୍ତେ ।

## ସ୍ଥା ଧାତୁ

(କ) ସ୍ଥା ଧାତୁ ଅଭିପ୍ରାୟଜ୍ଞାପନ ଅର୍ଥରେ ଆତ୍ମନେପଦୀ ହୁଏ । ଯଥା:— ଗୋପୀ କୃଷ୍ଣାୟ ତିଷ୍ଠତେ ।

(ଖ) ସ୍ଥା ଧାତୁ ମଧ୍ୟସ୍ଥତା ଅର୍ଥରେ ଆତ୍ମନେପଦୀ ହୁଏ । ଯଥା: — ଶ୍ରୀକୃଷ୍ଣଃ ମହାଭାରତଯୁଦ୍ଧେ ତିଷ୍ଠତେ (ମଧ୍ୟସ୍ଥତା କରୁଅଛନ୍ତି) ।

## ଯୃଜ୍ ଧାତୁ

ଯୃଜ୍ ଧାତୁ କର୍ତ୍ତାର ଭକ୍ତି ବୁଝାଇଲେ 'ଯ୍' ଆଗମ ହୋଇ ଆତ୍ମନେପଦୀ ହୁଏ । ଯଥା:—ଭକ୍ତ୍ୟା ମାଳା ସୃଜ୍ୟତେ (ଭକ୍ତରେ ଗୁନ୍ଥୁଅଛି); କିନ୍ତୁ ମାଳାକାରଃ ମାଳାଂ ସୃଜତି ।

କ୍ରିୟାଫଳ କର୍ତ୍ତୃଗାମୀ ହେଲେ ଉଭୟପଦୀ ଧାତୁର ଆତ୍ମନେପଦପଷ୍ଟି ପ୍ରୟୋଗ କରାଯାଏ; କିନ୍ତୁ କ୍ରିୟାଫଳ ପରଗାମୀ ହେଲେ ପରସ୍ମୈପଦପଷ୍ଟି ପ୍ରୟୋଗ କରାଯାଏ । ଯଥା:–ଯଜ୍–ବ୍ରାହ୍ମଣଃ ଯଜତେ (ଯଜ୍ଞର ଫଳ କର୍ତ୍ତା ଲଭ କରିବ) । ପୁରୋହିତଃ ଯଜତି (ଯଜ୍ଞର ଫଳ ଯଜମାନ ଲଭ କରିବ) ।

### ପ୍ରଶ୍ନ

୧ । ସଂଶୋଧନ କର:—ରାମୋ ରାବଣଂ ପରାଜୟତୁ । ଅହଂ ତ୍ୱୟା ସାର୍ଦ୍ଧମ୍ ଉଦ୍ୟାନଂ ପ୍ରତଷ୍ଠାମି । ବାଳକାଃ ସଦା ସ୍ୱାର୍ଥାୟ ବିବଦନ୍ତି । ରୋଗୀଃ ଦଧିଂ ନ ଭୁଞ୍ଜ୍ୟାତ୍ । ପିତା ଦେବାମୁପତଷ୍ଠତି ।

୨ । ପ୍ରଭେଦ ଦେଖାଅ:–ସଂକ୍ରୀଡ଼ତେ, ସଂକ୍ରୀଡ଼ତି । ଆହ୍ୱୟତେ, ଆହ୍ୱୟନ୍ତି । ଦାସ୍ୟତେ, ଦାସ୍ୟତି । ସୃଜ୍ୟତେ, ସୃଜତି । ଉପକ୍ରମତେ, ଉପକ୍ରାମତି ।

୩ । ସଂସ୍କୃତରେ ଅନୁବାଦ କର:—ସେମାନେ କେବେହେଲେ କୁକାର୍ଯ୍ୟରୁ ବିରତ ହେବେ ନାହିଁ । ଛାତ୍ର ଶିକ୍ଷକଙ୍କୁ ସବୁବେଳେ ଅନୁକରଣ କରେ । ତୁମମାନଙ୍କର ଏ ଯୁକ୍ତି କଦାପି ସଙ୍ଗତ ନୁହେଁ । ଏହି ବାଳଟି କଟକରୁ ପୁରୀକୁ ପଡ଼ିଅଛି । ଅଶୋକ ଧର୍ମବଳରେ ଭାରତବର୍ଷକୁ ଜୟ କରିଥିଲେ । ମନ୍ତ୍ରୀମାନେ ବର୍ତ୍ତମାନ ଦେଶ ଭଲରୂପେ ପାଳୁଅଛନ୍ତି । ପୁରୋହିତଙ୍କଠାରୁ ପୁରାଣ ଶୁଣିସାରି ସେମାନେ ଗପ କରିବାକୁ ଆରମ୍ଭ କଲେ । ଟଙ୍କା ଧନୀଠାରୁ ଧାର ନେଇ ଯିଏ ମାନେ ନାହିଁ; ତାକୁ ଧିକ୍ । ପଢ଼ିସାରି ପିଲାଏ ଖେଳ ଆରମ୍ଭ କଲେ ।

---

# କୃଦନ୍ତ

( କୃତ୍‌ପ୍ରତ୍ୟୟନିଷ୍ପନ୍ନ ପଦ )

ଧାତୁପରେ ଶତୃ, ଶାନଚ୍ ଓ ଲ୍ୟଟ୍ (ଅନ) ପ୍ରଭୃତି ଯେଉଁସବୁ ପ୍ରତ୍ୟୟ ଯୋଗ କରାଯାଇ ବିଶେଷ୍ୟ ଓ ବିଶେଷଣ ପ୍ରଭୃତି ପଦ ନିଷ୍ପନ୍ନ କରାଯାଏ, ସେହି ପ୍ରତ୍ୟୟଗୁଡ଼ିକୁ 'କୃତ୍' କୁହାଯାଏ ଓ ଉକ୍ତ ପ୍ରତ୍ୟୟାନ୍ତ ପଦ କୃଦନ୍ତ । ଯଥା: —

ଗମ୍+ଲ୍ୟଟ୍=ଗମନମ୍, ଏଠାରେ ଗମ୍ 'ଧାତୁ', ଲ୍ୟଟ୍ 'କୃତ୍' ପ୍ରତ୍ୟୟ ଓ ଗମନମ୍ 'କୃଦନ୍ତ' ପଦ ।

## ୧ । ଶତୃ (ଅତ୍)

ବର୍ତ୍ତମାନ କାଳରେ ପରସ୍ମୈପଦୀଧାତୁରୁ ଉତ୍ତର ଶତୃ ପ୍ରତ୍ୟୟ କଲେ ବିଶେଷଣ ପଦ ନିଷ୍ପନ୍ନ ହୁଏ । ଯଥା: —

*ଗମ୍+ଶତୃ — ପୁଂ:ଗଚ୍ଛନ୍, ସ୍ତ୍ରୀ:ଗଚ୍ଛନ୍ତୀ, କ୍ଲୀ:ଗଚ୍ଛତ୍ । ସ୍ତ୍ରୀ+ଶତୃ — ପୁଂ:ବିଭ୍ୟତ୍, ସ୍ତ୍ରୀ:ବିଭ୍ୟତୀ, କ୍ଲୀ:ବିଭ୍ୟତ୍ । କେତେଗୁଡ଼ିଏ ଶତୃ ପ୍ରତ୍ୟୟାନ୍ତ ଶବ୍ଦ । ଯଥା: —

ଭୂ—ଭବତ୍, ଗମ୍ — ଗଚ୍ଛତ୍, ଗୈ — ଗାୟତ୍; ପା — ପିବତ୍, ସ୍ଥା — ତିଷ୍ଠତ୍, ଜି—ଜୟତ୍, ଦୃଶ୍—ପଶ୍ୟତ୍, ଦନ୍ଶ୍—ଦଶତ୍, ଘ୍ରା — ଜିଘ୍ରତ୍, ଧାବ୍—ଧାବ୍ୟତ୍, ନଶ୍—ନଶ୍ୟତ୍, କ୍ରୁଧ୍—କ୍ରୁଧ୍ୟତ୍, ଶମ୍—ଶାମ୍ୟତ୍, ଜୃ — ଜୀର୍ଯ୍ୟତ୍, ବ୍ୟଧ୍ — ବିଧ୍ୟତ୍, ଇଷ୍—ଇଚ୍ଛତ୍, ସ୍ପୃଶ୍ — ସ୍ପୃଶତ୍, ପ୍ରଚ୍ଛ୍—ପୃଚ୍ଛତ୍, ମୁଚ୍ — ମୁଞ୍ଚତ୍, ଶ୍ରୁ — ଶୃଣ୍ୱତ୍, ଚି — ଚିନ୍ୱତ୍, ରୁଧ୍—ରୁନ୍ଧତ୍, ଛିଦ୍ — ଛିନ୍ଦତ୍, ହୁ — ଜୁହ୍ୱତ୍; ସ୍ତ୍ରୀ — ବିଭ୍ୟତ୍, ହନ୍—ଘ୍ନତ୍, ଅସ୍ — ସତ୍, ଜାଗୃ — ଜାଗ୍ରତ୍, ରୁଦ୍— ରୁଦତ୍ ଇତ୍ୟାଦି ।

---

*ଯେଉଁ ଧାତୁର ଲଟ୍ ପ୍ରଥମପୁରୁଷବହୁବଚନରେ ଅନ୍ତି ହୁଏ, ସେହି ଧାତୁନିଷ୍ପନ୍ନ ଶତୃ ପ୍ରତ୍ୟୟାନ୍ତ ଶବ୍ଦର ରୂପ ଗଚ୍ଛତ୍ ଶବ୍ଦର ରୂପପରି ହୁଏ ଓ ଯେଉଁ ଧାତୁର ଲଟ୍ ପ୍ରଥମପୁରୁଷବହୁବଚନରେ ଅତି ହୁଏ, ସେହି ଧାତୁନିଷ୍ପନ୍ନ ଶତୃ ପ୍ରତ୍ୟୟାନ୍ତ ଶବ୍ଦର ରୂପ ବିଭ୍ୟତ୍ ଶବ୍ଦର ରୂପ ପରି ହୁଏ ।

୨ । ଶାନଚ୍ (ଆନ, ମାନ ବା ଈନ)

ବର୍ତ୍ତମାନକାଳରେ ଆତ୍ମନେପଦଧାତୁରୁ ଉତ୍ତର ଶାନଚ୍ ପ୍ରତ୍ୟୟ କଲେ ବିଶେଷଣ ପଦ ନିଷ୍ପନ୍ନ ହୁଏ । ଯଥା:—

କ୍ରୀ+ଶାନଚ୍ (ଆନ)—ପୁଂ:କ୍ରୀଣାନଃ, ସ୍ତ୍ରୀ:କ୍ରୀଣାନା, କ୍ଳୀ: କ୍ରୀଣାନମ୍ ।
ଲଭ୍+ଶାନଚ୍ (ମାନ)—ପୁଂ:ଲଭମାନଃ,ସ୍ତ୍ରୀ: ଲଭମାନା, କ୍ଳୀ: ଲଭମାନମ୍ ।
ଆସ୍+ଶାନଚ୍ (ଈନ)—ପୁଂ:ଆସୀନଃ, ସ୍ତ୍ରୀ: ଆସୀନା, କ୍ଳୀ: ଆସୀନମ୍ ।

କେତେଗୁଡ଼ିଏ ଶାନଚ୍ ପ୍ରତ୍ୟୟାନ୍ତ ଶବ୍ଦ । ଯଥା:—

ସେବ୍—ସେବମାନ, ଜନ୍—ଜାୟମାନ, ଦୀପ୍—ଦୀପ୍ୟମାନ, ମୃ—ମ୍ରିୟମାଣ, ଲକ୍ଷ୍—ଲକ୍ଷମାନ, ଶବ୍ଦାୟ—ଶବ୍ଦାୟମାନ, କମ୍ପ୍—କମ୍ପମାନ, ଶୀ—ଶୟାନ, ଅଧି+ଇ—ଅଧୀୟାନ ଓ ଜନ୍—ଜାୟମାନ ଇତ୍ୟାଦି ।

କର୍ମ ଓ ଭାବବାଚ୍ୟରେ କେବଳ ଶାନଚ୍ ପ୍ରତ୍ୟୟ ହୁଏ । ଯଥା:—

ପଠ୍—ପାଠ୍ୟମାନ, ଦା—ଦୀୟମାନ, ଦୃଶ୍—ଦୃଶ୍ୟମାନ, କ୍ରୀଡ୍—କ୍ରୀଡ୍ୟମାନ ଓ ହସ୍—ହସ୍ୟମାନ ଇତ୍ୟାଦି ।

ଉଭୟପଦଧାତୁମାନଙ୍କରୁ ଉତ୍ତର ଶତୃ ଓ ଶାନଚ୍ ଉଭୟ ପ୍ରତ୍ୟୟ ହୁଏ । ଯଥା:—

କ୍ରୀ—କ୍ରୀଣତ୍, କ୍ରୀଣାନ । ଗ୍ରହ—ଗୃହ୍ଣତ୍, ଗୃହ୍ଣାନ । ଦା—ଦଦତ୍, ଦଦାନ । ଧା—ଦଧତ୍, ଦଧାନ । କୃ—କୁର୍ବତ୍, କୁର୍ବାଣ । ଭୁଜ୍—ଭୁଞ୍ଜତ୍, ଭୁଞ୍ଜାନ । ବ୍ରୂ—ବ୍ରୁବତ୍, ବ୍ରୁବାଣ । ଦୃଶ୍+ଣିଚ୍=ଦର୍ଶି—ଦର୍ଶୟତ୍, ଦର୍ଶୟମାନ ଇତ୍ୟାଦି ।

୩ । ସ୍ୟତୃ (ସ୍ୟତ୍)

ଭବିଷ୍ୟତ୍କାଳ ଅର୍ଥରେ ପରସ୍ମୈପଦଧାତୁରୁ ଉତ୍ତର ସ୍ୟତୃ ପ୍ରତ୍ୟୟ କଲେ ବିଶେଷଣପଦ ନିଷ୍ପନ୍ନ ହୁଏ । ଯଥା:—

ପଠ୍+ସ୍ୟତୃ—ପୁଂ: ପଠିଷ୍ୟନ୍, ସ୍ତ୍ରୀ: ପଠିଷ୍ୟନ୍ତୀ, କ୍ଳୀ: ପଠିଷ୍ୟତ୍ ।

କେତେଗୁଡ଼ିଏ ସ୍ୟତୃ ପ୍ରତ୍ୟୟାନ୍ତ ଶବ୍ଦ । ଯଥା:—

ଭୂ—ଭବିଷ୍ୟତ୍, ଗମ୍—ଗମିଷ୍ୟତ୍, ପା—ପାସ୍ୟତ୍, ଦୃଶ୍—ଦ୍ରକ୍ଷ୍ୟତ୍ ଓ ଦା—ଦାସ୍ୟତ୍ ଇତ୍ୟାଦି ।

## ୪ । ସ୍ୟମାନ

ଭବିଷ୍ୟତ୍କାଳ ଅର୍ଥରେ ଆତ୍ମନେପଦଧାତୁରୁ ଉତ୍ତର ସ୍ୟମାନ ପ୍ରତ୍ୟୟ କଲେ ବିଶେଷଣପଦ ନିଷ୍ପନ୍ନ ହୁଏ । ଯଥା: —

ଲଭ୍+ସ୍ୟମାନ—ପୁଂ: ଲପ୍ସ୍ୟମାନଃ, ସ୍ତ୍ରୀ: ଲପ୍ସ୍ୟମାନା, କ୍ଳୀ: ଲପ୍ସ୍ୟମାନମ୍ ।

କେତେଗୁଡ଼ିଏ ସ୍ୟମାନ ପ୍ରତ୍ୟୟାନ୍ତ ଶବ୍ଦ । ଯଥା:—

ସହ୍—ସହିଷ୍ୟମାଣ, ଦା—ଦାସ୍ୟମାନ ଓ ଜନ୍—ଜନିଷ୍ୟମାଣ ଇତ୍ୟାଦି ।

## ୫ । କୃତ୍ୟ (ତବ୍ୟ, ଅନୀୟ, ଣ୍ୟତ୍, ଯତ୍ ଓ କ୍ୟପ୍)

ଭବିଷ୍ୟତ୍ ଏବଂ ଔଚିତ୍ୟ ବା ବିଧି ଅର୍ଥରେ ସକର୍ମକ ଧାତୁରୁ ଉତ୍ତର କର୍ମବାଚ୍ୟରେ ଓ ଅକର୍ମକ ଧାତୁରୁ ଉତ୍ତର ଭାବବାଚ୍ୟରେ କୃତ୍ୟ ପ୍ରତ୍ୟୟ କଲେ ବିଶେଷଣପଦ ନିଷ୍ପନ୍ନ ହୁଏ । ଯଥା:—

ପଠ୍+ତବ୍ୟ—ପୁଂ: ପଠିତବ୍ୟଃ, ସ୍ତ୍ରୀ:ପଠିତବ୍ୟା, କ୍ଳୀ:ପଠିତବ୍ୟମ୍ ।

ଶ୍ରୁ+ଅନୀୟ—ପୁଂ:ଶ୍ରବଣୀୟଃ, ସ୍ତ୍ରୀ:ଶ୍ରବଣୀୟା, କ୍ଳୀ: ଶ୍ରବଣୀୟମ୍ ।

କୃ+ଣ୍ୟତ୍—ପୁଂ:କାର୍ଯ୍ୟଃ, ସ୍ତ୍ରୀ: କାର୍ଯ୍ୟା, କ୍ଳୀ: କାର୍ଯ୍ୟମ୍ ।

ପା+ଯତ୍—ପୁଂ: ପେୟଃ, ସ୍ତ୍ରୀ: ପେୟା, କ୍ଳୀ: ପେୟମ୍ ।

ଶାସ୍+କ୍ୟପ୍—ପୁଂ: ଶିଷ୍ୟଃ, ସ୍ତ୍ରୀ: ଶିଷ୍ୟା, କ୍ଳୀ: ଶିଷ୍ୟମ୍ ।

କୃତ୍ୟ ପ୍ରତ୍ୟୟାନ୍ତ ବିଶେଷଣପଦ କର୍ମ ଓ ଭାବବାଚ୍ୟରେ ଭବିଷ୍ୟତ୍, ବିଧି ଏବଂ ସମ୍ଭାବନା ଅର୍ଥରେ ସମାପିକା କ୍ରିୟାରୂପେ ବ୍ୟବହୃତ ହୁଏ ।

(କ) କର୍ମବାଚ୍ୟରେ କ୍ରିୟାରୂପେ ବ୍ୟବହୃତ ହେଲେ କର୍ମର ଲିଙ୍ଗ,ବଚନ ଓ ବିଭକ୍ତି ଅନୁସାରେ କୃତ୍ୟ ପ୍ରତ୍ୟୟାନ୍ତପଦର ଲିଙ୍ଗାଦି ନିର୍ଦ୍ଦେଶ କରାଯାଏ । ଯଥା:—

ମୟା ବେଦଃ ପଠିତବ୍ୟଃ । ମୟା ଗୀତା ପଠିତବ୍ୟା । ମୟା ପୁରାଣଂ ପଠିତବ୍ୟମ୍ ।

(ଖ) ଭାବବାଚ୍ୟରେ କ୍ରିୟାରୂପେ ବ୍ୟବହୃତ ହେଲେ କୃତ୍ୟ ପ୍ରତ୍ୟୟାନ୍ତ ପଦ କ୍ଳୀବଲିଙ୍ଗ, ପ୍ରଥମା ବିଭକ୍ତ୍ୟନ୍ତ ଓ ଏକବଚନାନ୍ତ ହୁଏ । ଯଥା: —

ବାଳକେନ କ୍ରୀଡ଼ିତବ୍ୟମ୍ । ବାଳକାଭିଃ ହସିତବ୍ୟମ୍ । ଯୁବାଭ୍ୟାଂ ସ୍ଥାତବ୍ୟମ୍ ।

କେତେଗୁଡ଼ିଏ ତବ୍ୟ ଓ ଅନୀୟ ପ୍ରତ୍ୟୟାନ୍ତ ଶବ୍ଦ । ଯଥା: –

କୃ – କର୍ତ୍ତବ୍ୟ, କରଣୀୟ । କ୍ରୀ - କ୍ରେତବ୍ୟ, କ୍ରୟଣୀୟ । କ୍ଷମ୍ – କ୍ଷନ୍ତବ୍ୟ, କ୍ଷମଣୀୟ । ଗମ୍—ଗନ୍ତବ୍ୟ, ଗମନୀୟ । ଗ୍ରହ୍ - ଗ୍ରହୀତବ୍ୟ, ଗ୍ରହଣୀୟ । ଚି—ଚେତବ୍ୟ, ଚୟନୀୟ । ଜି—ଜେତବ୍ୟ, ଜୟନୀୟ । ତ୍ୟଜ୍ ତ୍ୟକ୍ତବ୍ୟ, ତ୍ୟଜନୀୟ । ନୀ – ନେତବ୍ୟ, ନୟନୀୟ । ପଠ୍— ପଠିତବ୍ୟ, ପଠନୀୟ । ପା – ପାତବ୍ୟ, ପାନୀୟ । ଭୀ—ଭେତବ୍ୟ,ଭୟନୀୟ । ଭୁଜ୍—ଭୋକ୍ତବ୍ୟ, ଭୋଜନୀୟ । ଭୂ – ଭବିତବ୍ୟ, ଭବନୀୟ । ଲଭ୍– ଲବ୍‌ଧବ୍ୟ, ଲଭନୀୟ । ଶୀ – ଶୟିତବ୍ୟ, ଶୟନୀୟ । ସହ୍—ସହିତବ୍ୟ, (ସୋଢ଼ବ୍ୟ), ସହନୀୟ । ସ୍ଥା – ସ୍ଥାତବ୍ୟ, ସ୍ଥାନୀୟ । ସ୍ମୃ—ସ୍ମର୍ତ୍ତବ୍ୟ,ସ୍ମରଣୀୟ । ହୃ— ହର୍ତ୍ତବ୍ୟ, ହରଣୀୟ ଇତ୍ୟାଦି ।

କେତେଗୁଡ଼ିଏ ଣ୍ୟତ୍ (ଯ) ପ୍ରତ୍ୟୟାନ୍ତ ଶବ୍ଦ । ଯଥା: –

କୃ – କାର୍ଯ୍ୟ. ପଠ୍ – ପାଠ୍ୟ, ଭୁଜ୍—ଭୋଜ୍ୟ ଓ ଭୋଗ୍ୟ,ପଚ୍ – ପାକ୍ୟ, ଯୁଜ୍ – ଯୋଗ୍ୟ, ବଚ୍ – ବାକ୍ୟ ଓ ଯୁଜ୍ – ଯୋଗ୍ୟ ଇତ୍ୟାଦି ।

କେତେଗୁଡ଼ିଏ ଯତ୍ (ଯ) ପ୍ରତ୍ୟୟାନ୍ତ ଶବ୍ଦ । ଯଥା: –

ଜି – ଜେୟ, ଶକ୍—ଶକ୍ୟ, ସହ୍—ସହ୍ୟ, ଗମ୍—ଗମ୍ୟ, ପା – ପେୟ, ଗୈ—ଗେୟ, ଦା – ଦେୟ ଓ ଜ୍ଞା – ଜ୍ଞେୟ ଇତ୍ୟାଦି ।

କେତେଗୁଡ଼ିଏ କ୍ୟପ୍ ପ୍ରତ୍ୟୟାନ୍ତ ଶବ୍ଦ । ଯଥା:—

ଭୃ—ଭୃତ୍ୟ, କୃ – କୃତ୍ୟ, ସ୍ତୁ – ସ୍ତୁତ୍ୟ ଓ ଶାସ୍ – ଶିଷ୍ୟ ଇତ୍ୟାଦି ।

୬ । କ୍ତବତୁ (ତବତ୍)

କର୍ତ୍ତୃବାଚ୍ୟରେ ଅତୀତକାଳରେ ଧାତୁରୁ ଉତ୍ତର କ୍ତବତୁ ପ୍ରତ୍ୟୟ କଲେ ବିଶେଷଣପଦ ନିଷ୍ପନ୍ନ ହୁଏ । ଯଥା: –

ହନ୍+କ୍ତବତୁ – ପୁଂ: ହତବାନ୍, ସ୍ତ୍ରୀ: ହତବତୀ, କ୍ଳୀ: ହତବତ୍ ।

ଏହି ବିଶେଷଣପଦ କର୍ତ୍ତୃବାଚ୍ୟରେ ଅତୀତକାଳରେ ସମାପିକା କ୍ରିୟାରୂପେ ବ୍ୟବହୃତ ହୁଏ ଓ ଏହାର ଲିଙ୍ଗାଦି କର୍ତ୍ତା ଅନୁସାରେ ନିର୍ଦ୍ଧାରିତ ହୁଏ । ଯଥା: -

ରାମଃ ରାବଣଂ ହତବାନ୍ । ଦୁର୍ଗା ରାକ୍ଷସାନ୍ ହତବତୀ । ମିତ୍ରଂ ମୃଗଂ ହତବତ୍ ।

। କ୍ତ (ତ)

ଅତୀତକାଳ ଅର୍ଥରେ କେବଳ ଗମନାର୍ଥକ ଓ ଅକର୍ମକ ଧାତୁରୁ ଉତ୍ପର କର୍ତ୍ତୃବାଚ୍ୟରେ, ସମସ୍ତ ସକର୍ମକ ଧାତୁରୁ ଉତ୍ପର କର୍ମବାଚ୍ୟରେ ଏବଂ ସମସ୍ତ ଅକର୍ମକ ଧାତୁରୁ ଉତ୍ପର ଭାବବାଚ୍ୟରେ କ୍ତ ପ୍ରତ୍ୟୟ କଲେ ବିଶେଷଣ ପଦ ନିଷ୍ପନ୍ନ ହୁଏ । ଯଥା: —

ଗମ୍+କ୍ତ ପୁଂ: ଗତଃ, ସ୍ତ୍ରୀ: ଗତା, କ୍ଲୀ: ଗତମ୍ ।

(କ) କର୍ତ୍ତୃବାଚ୍ୟରେ ହୋଇଥିବା କ୍ତ ପ୍ରତ୍ୟୟାନ୍ତ ପଦ ଉକ୍ତ ବାଚ୍ୟରେ ସମାପିକା କ୍ରିୟାରୂପେ ବ୍ୟବହୃତ ହୁଏ । ଏହାର ଲିଙ୍ଗାଦି କର୍ତ୍ତା ଅନୁସାରେ ନିର୍ଦ୍ଧାରିତ ହୁଏ । ଯଥା: —

ଗତ୍ୟର୍ଥ - ସ ଗ୍ରାମଂ ଗତଃ । ସୀତା ଗ୍ରାମଂ ଗତା । କଳତ୍ରଂ ଗ୍ରାମଂ ଗତମ୍ ।

ଅକର୍ମକ - ବାଳକଃ ସୁପ୍ତଃ । ମାତା ସ୍ଥିତା ଅପତ୍ୟଂ ସ୍ଥିତମ୍ ।

(ଖ) କର୍ମବାଚ୍ୟରେ ହୋଇଥିବା କ୍ତ ପ୍ରତ୍ୟୟାନ୍ତ ପଦ ଉକ୍ତ ବାଚ୍ୟରେ ସମାପିକା କ୍ରିୟାରୂପେ ବ୍ୟବହୃତ ହୁଏ ଓ ଏହାର ଲିଙ୍ଗାଦି କର୍ମ ଅନୁସାରେ ନିର୍ଦ୍ଧାରିତ ହୁଏ । ଯଥା: —

ମୟା ବିଦେଶଃ ଦୃଷ୍ଟଃ । ଗୋପାଳେନ ନଦୀ ଗତା । ବାଳକେନ ପୁଷ୍ପାଣି ଆନୀତାନି ।

(ଗ) ଭାବବାଚ୍ୟରେ ହୋଇଥିବା କ୍ତ ପ୍ରତ୍ୟୟାନ୍ତ ପଦ ଉକ୍ତ ବାଚ୍ୟରେ ସମାପିକା କ୍ରିୟାରୂପେ ବ୍ୟବହୃତ ହୁଏ ଓ ଏହା କେବଳ କ୍ଲୀବଲିଙ୍ଗ, ପ୍ରଥମା ବିଭକ୍ତ୍ୟନ୍ତ ଓ ଏକବଚନାନ୍ତ ହୁଏ । ଯଥା: —

ତେନ ହସିତମ୍ । ଅସ୍ମାଭିଃ କ୍ରୀଡ଼ିତମ୍ । ବାଳକାଭିଃ ସ୍ଥିତମ୍ ।

(ଘ) ଇଚ୍ଛାର୍ଥ, ଜ୍ଞାନାର୍ଥ ଓ ପୂଜାର୍ଥ ଧାତୁରୁ ଉତ୍ପର କର୍ମବାଚ୍ୟରେ ବର୍ତ୍ତମାନକାଳରେ କ୍ତ ପ୍ରତ୍ୟୟ ହୁଏ । ଏହି କ୍ତ ପ୍ରତ୍ୟୟାନ୍ତ ପଦର କର୍ତ୍ତାଠାରେ ଷଷ୍ଠୀ ବିଭକ୍ତି ହୁଏ । ଯଥା: —

ମନ୍+କ୍ତ — ମତମ୍ (ଇଦଂ ମମ ମତମ୍) । ଜ୍ଞା+କ୍ତ — ଜ୍ଞାତମ୍ (ଇଦଂ ମମ ଜ୍ଞାତମ୍) । ପୂଜ୍+କ୍ତ — ପୂଜିତଃ (ସ ଜନ ପୂଜିତଃ) ।

'ମତିବୁଦ୍ଧିପୂଜାର୍ଥେଭ୍ୟୋ ବର୍ତ୍ତମାନେ କ୍ତ'

କେତେଗୁଡ଼ିଏ କ୍ତ ପ୍ରତ୍ୟୟାନ୍ତ ଶବ୍ଦ । ଯଥା: —

ପଠ୍—ପଠିତ । ଲିଖ୍—ଲିଖିତ । କୁପ୍—କୁପିତ । ଜ୍ଞା—ଜ୍ଞାତ । ଶ୍ରୁ—ଶ୍ରୁତ । ସୃଜ୍—ସୃଷ୍ଟ । କ୍ରୁଧ୍—କ୍ରୁଦ୍ଧ । ଦୃଶ୍—ଦୃଷ୍ଟ । ଲିହ୍—ଲିଢ଼ । ବପ୍—ଉପ୍ତ । ଶମ୍—ଶାନ୍ତ । ଭ୍ରମ୍—ଭ୍ରାନ୍ତ । କ୍ଷମ୍—କ୍ଷାନ୍ତ । ଦଂଶ୍—ଦଷ୍ଟ । ରଞ୍ଜ୍—ରକ୍ତ । ଖନ୍—ଖାତ । ଜନ୍—ଜାତ । ମା—ମିତ । ସ୍ଥା—ସ୍ଥିତ । ପା—ପୀତ । ଗୈ—ଗୀତ । ହା—ହୀନ । ସ୍ୱପ୍—ସୁପ୍ତ । ବସ—ଉଷିତ । ଅଦ୍—ଅନ୍ନ । ଭିଦ୍—ଭିନ୍ନ । ବ୍ରୂ—ଉକ୍ତ । କ୍ଲମ୍—କ୍ଲାନ୍ତ । ପଚ୍—ପକ୍ୱ ଓ ଶୁଷ୍—ଶୁଷ୍କ ଇତ୍ୟାଦି ।

କ୍ତ ପ୍ରତ୍ୟୟାନ୍ତ ବିଶେଷଣପଦର ଶେଷରେ ବତ୍ ଯୋଗ କଲେ କ୍ତବତୁ ପ୍ରତ୍ୟୟାନ୍ତ ବିଶେଷଣ ପଦ ନିଷ୍ପନ୍ନ ହୁଏ । ଯଥା: — ଗତ (କ୍ତ), ଗତବତ୍ (କ୍ତବତ୍) ।

### ୮ । ଣିନ୍ (ଇନ୍)

କର୍ତ୍ତୃବାଚ୍ୟରେ ଧାତୁରୁ ଉତ୍ତର ଣିନ୍ ପ୍ରତ୍ୟୟ କଲେ ବିଶେଷଣପଦ ନିଷ୍ପନ୍ନ ହୁଏ । ଯଥା:—

ବସ୍+ଣିନ୍—ପୁଂ: ବାସୀ, ସ୍ତ୍ରୀ: ବାସିନୀ, କ୍ଲୀ: ବାସି ଇତ୍ୟାଦି ।

### ୯ । ଘଞ୍ (ଅ)

ଭାବବାଚ୍ୟରେ ଧାତୁରୁ ଉତ୍ତର ଘଞ୍ ପ୍ରତ୍ୟୟ କଲେ ବିଶେଷ୍ୟପଦ ନିଷ୍ପନ୍ନ ହୁଏ । ଏହି ପଦ ପୁଂଲିଙ୍ଗ । ଯଥା: —

ପଠ୍+ଘଞ୍—ପାଠଃ । ରୁଜ୍+ଘଞ୍—ରୋଗଃ ଓ ପଚ୍+ଘଞ୍—ପାକଃ ଇତ୍ୟାଦି । (ଘଞ୍ ପ୍ରତ୍ୟୟ ପରେ ଥିଲେ ଧାତୁ ଶେଷରେ ଥିବା ଚ୍ ସ୍ଥାନରେ କ୍ ଓ ଜ୍ ସ୍ଥାନରେ ଗ୍ ହୁଏ ।)

### ୧୦ । କ୍ତିନ୍ (ତି)

ଭାବବାଚ୍ୟରେ ଧାତୁରୁ ଉତ୍ତର କ୍ତିନ୍ ପ୍ରତ୍ୟୟ କଲେ ବିଶେଷ୍ୟପଦ ନିଷ୍ପନ୍ନ ହୁଏ । ଏହି ପଦ ସ୍ତ୍ରୀଲିଙ୍ଗ । ଯଥା: —

ମା+କ୍ତିନ୍—ମତିଃ । ମୁଚ୍+କ୍ତିନ୍—ମୁକ୍ତିଃ । ଶମ୍+କ୍ତିନ୍—ଶାନ୍ତିଃ । ଖ୍ୟା+କ୍ତିନ୍—ଖ୍ୟାତିଃ ଇତ୍ୟାଦି ।

୧୧ । ଲ୍ୟୁଟ୍ (ଅନ)

ଭାବ, କରଣ ଓ ଅଧିକରଣବାଚ୍ୟରେ ଧାତୁରୁ ଉତ୍ତର ଲ୍ୟୁଟ୍ ପ୍ରତ୍ୟୟ କଲେ ବିଶେଷ୍ୟପଦ ନିଷ୍ପନ୍ନ ହୁଏ । ଏହି ପଦ କ୍ଲୀବଲିଙ୍ଗ । ଯଥା: —

ଭାବବାଚ୍ୟ: — ପଠ୍ୟତେ ଇତି—ପଠନମ୍ ଓ ଦୀୟତେ ଇତି – ଦାନମ୍ ।

କରଣବାଚ୍ୟ: — ଯାଯ୍ୟତେ ଅନେନ— ଯାନମ୍ ଓ ନୀୟତେ ଅନେନ— ନୟନମ୍ ।

ଅଧିକରଣବାଚ୍ୟ:— ଶଯ୍ୟତେ ଅସ୍ମିନ୍ – ଶୟନମ୍ ଓ ସ୍ଥୀୟତେ ଅସ୍ମିନ୍ – ସ୍ଥାନମ୍ ଇତ୍ୟାଦି ।

୧୨ । କ୍ତ୍ୱା (ତ୍ୱା)

ସମାପିକା ଓ ଅସମାପିକା ଉଭୟ କ୍ରିୟାର ଏକ କର୍ତ୍ତା ହେଲେ ଅନନ୍ତର ଅର୍ଥରେ ପୂର୍ବକାଳବୋଧକ ଧାତୁରୁ ଉତ୍ତର କ୍ତ୍ୱା ପ୍ରତ୍ୟୟ ହୋଇ ଅବ୍ୟୟ ପଦ ନିଷ୍ପନ୍ନ ହୁଏ । ଏହାକୁ ଅସମାପିକା କ୍ରିୟାପଦ କହନ୍ତି । ଯଥା: —

ଗ୍ରହ୍ + କ୍ତ୍ୱା—ଗୃହୀତ୍ୱା (ଗ୍ରହଣାତ୍ ଅନନ୍ତରମ୍) ।

ଏକକର୍ତ୍ତୃକ: — ସ ଗୃହଂ ଗତ୍ୱା ଅଖାଦତ୍(ସେ ଘରକୁ ଯାଇ ଖାଇଥିଲା) ।

ଭିନ୍ନକର୍ତ୍ତୃକ: — ମୟି ଗୃହଂ ଗତେ ସ ଅଖାଦତ୍ (ମୁଁ ଘରକୁ ଗଲା ପରେ ସେ ଖାଇଥିଲା) ।

୧୩ । ଲ୍ୟପ୍ (ଯ)

ସମାପିକା ଓ ଅସମାପିକା ଉଭୟ କ୍ରିୟାର ଏକ କର୍ତ୍ତା ହୋଇ ନଞ୍ (ଅ) ବ୍ୟତୀତ ଅନ୍ୟ କୌଣସି ପଦ ପୂର୍ବରେ ଥିଲେ, ଅନନ୍ତର ଅର୍ଥରେ ପୂର୍ବକାଳବୋଧକ ଧାତୁରୁ ଉତ୍ତର କ୍ତ୍ୱା ପ୍ରତ୍ୟୟ ପରିବର୍ତ୍ତେ ଲ୍ୟପ୍ ପ୍ରତ୍ୟୟ ହୋଇ ଅବ୍ୟୟ ପଦ ନିଷ୍ପନ୍ନ ହୁଏ । ଏହାକୁ ଅସମାପିକା କ୍ରିୟାପଦ କହନ୍ତି । ଯଥା: —

ପ୍ର + ଦା + ଲ୍ୟପ୍ = ପ୍ରଦାୟ (ପ୍ରଦାନାତ୍ ଅନନ୍ତରମ୍); କିନ୍ତୁ ନ + ଗମ୍ + କ୍ତ୍ୱା = ଅଗତ୍ୱା ।

୧୪ । ତୁମୁନ୍ (ତୁମ୍)

ସମାପିକା ଓ ଅସମାପିକା ଉଭୟ କ୍ରିୟାର ଏକ କର୍ତ୍ତା ହେଲେ ନିମିତ୍ତ ଅର୍ଥରେ ଭବିଷ୍ୟତ୍କାଳରେ ଧାତୁରୁ ଉତ୍ତର ତୁମୁନ୍ ପ୍ରତ୍ୟୟ ହୋଇ ଅବ୍ୟୟ

ପଦ ବିଶିଷ୍ଟ ହୁଏ । ଏହାକୁ ଅସମାପିକା କ୍ରିୟାପଦ କହନ୍ତି । ଯଥା: -

ପଠ୍ + ତୁମୁନ = ପଠିତୁମ୍ (ପଠନସ୍ୟ ହେତୋଃ) ।

ଏକକର୍ତ୍ତୃକ:— ବାଳକଃ ପଠିତୁଂ ବଦତି (ବାଳକ ପଢ଼ିବାକୁ କହୁଅଛି) ।

ଭିନ୍ନକର୍ତ୍ତୃକ:— ଗୁରୁଃ ବାଳକଂ ପଠନାୟ ବଦତି (ଗୁରୁ ବାଳକକୁ ପଢ଼ିବାକୁ କହୁଅଛନ୍ତି) ।

# ଅସମାପିକା କ୍ରିୟାପଦ

## କ୍ତ୍ୱା ପ୍ରତ୍ୟୟାନ୍ତ

କୁପ୍ – କୁପିତ୍ୱା (କୋପ କରି)

କ୍ରୀ—କ୍ରୀତ୍ୱା (କିଣି)

କ୍ଷମ୍ – କ୍ଷମିତ୍ୱା (କ୍ଷମା କରି)

ଖନ୍—ଖାତ୍ୱା (ଖୋଳି)

ଗୈ—ଗୀତ୍ୱା (ଗାନ କରି)

କୃଷ୍—କୃଷ୍ଟ୍ୱା (କୃଷି କରି)

କ୍ରୀଡ୍ - କ୍ରୀଡିତ୍ୱା (ଖେଳି)

କ୍ଷିପ୍—କ୍ଷିପ୍ତ୍ୱା (ଫୋପାଡ଼ି)

ଗମ୍—ଗତ୍ୱା (ଯାଇ)

ଗ୍ରନ୍ଥ୍ — ଗ୍ରଥିତ୍ୱା (ଗୁନ୍ଥି)

ଯଜ୍—ଇଷ୍ଟ୍ୱା (ଯାଗ କରି)

ହନ୍—ହତ୍ୱା (ହତ୍ୟା କରି)

ବ୍ରୂ – ଉକ୍ତ୍ୱା (କହି)

ଘ୍ରା – ଘ୍ରାତ୍ୱା (ଶୁଙ୍ଘି)

ଦହ୍ - ଦଗ୍ଧ୍ୱା (ଦାହ କରି)

ପଚ୍ – ପକ୍ତ୍ୱା (ରାନ୍ଧି)

ପୂଜ୍—ପୂଜୟିତ୍ୱା (ପୂଜା କରି)

ମନ୍—ମତ୍ୱା (ମନେ କରି)

କୃ—କୃତ୍ୱା (କରି)

ଚି—ଚିତ୍ୱା (ତୋଳି)

ଜି – ଜିତ୍ୱା (ଜୟ କରି)

ଦନ୍ଶ୍—ଦଷ୍ଟ୍ୱା (ଦଂଶନ କରି)

ଦା — ଦତ୍ତ୍ୱା (ଦେଇ)

ଦୃଶ୍— ଦୃଷ୍ଟ୍ୱା (ଦେଖି)

ଧା – ହିତ୍ୱା (ଧାରଣ କରି)

ସ୍ଥା—ସ୍ଥିତ୍ୱା (ରହି)

ନୀ—ନୀତ୍ୱା (ନେଇ)

ନୃତ୍— ନର୍ତ୍ତିତ୍ୱା (ନାଚି)

ଲଭ୍ – ଲବ୍ଧ୍ୱା (ଲାଭ କରି)

ମୁଚ—ମୁକ୍ତ୍ୱା (ମୁକୁଳାଇ)

ହୃ— ହୃତ୍ୱା (ହରଣ କରି)

ବଦ୍ – ଉଦିତ୍ୱା (କହି)

ତ୍ୟଜ୍ – ତ୍ୟକ୍ତ୍ୱା (ତ୍ୟାଗ କରି)

ପା – ପୀତ୍ୱା (ପାନ କରି)

ପଠ୍ – ପଠିତ୍ୱା (ପଢ଼ି)

ପ୍ରଚ୍ଛ୍ – ପୃଷ୍ଟ୍ୱା (ପଚାରି)

ଭୁଜ୍ – ଭୁକ୍ତ୍ୱା (ଭୋଜନ କରି)

ସ୍ମୃ – ସ୍ମୃତ୍ୱା (ସ୍ମରଣ କରି)

ବସ୍—ଉଷିତ୍ୱା (ବାସ କରି) ବନ୍ଦ—ଉଦ୍ଧ୍ୱା (ବନ୍ଦନ କରି)
ଶୀ—ଶୟିତ୍ୱା (ଶୋଇ) ସ୍ପୃଶ୍—ସ୍ପୃଷ୍ଟ୍ୱା (ସ୍ପର୍ଶ କରି)
ବଦ୍—ଉଦିତ୍ୱା (କହି) ପା—ପାତ୍ୱା (ପାଳନ କରି)

## ଲ୍ୟପ୍ ପ୍ରତ୍ୟୟାନ୍ତ

ପ୍ର+ନମ୍—ପ୍ରଣମ୍ୟ (ପ୍ରଣାମ କରି) ପ୍ର+ହୃ—ପ୍ରହୃତ୍ୟ (ପ୍ରହାର କରି)
ପ୍ର+ଆପ୍—ପ୍ରାପ୍ୟ (ପାଇ) ଉପ+କୃ—ଉପକୃତ୍ୟ (ଉପକାର କରି)
ସମ୍+ରକ୍ଷ୍—ସଂରକ୍ଷ୍ୟ (ରକ୍ଷା କରି) ବି+ହା—ବିହାୟ (ତ୍ୟାଗ କରି)
ଆ+ଗମ୍—ଆଗମ୍ୟ, ଆଗତ୍ୟ (ଆସି) ବି+କ୍ରୀ—ବିକ୍ରୀୟ (ବିକି)
ଆ+ରଭ୍—ଆରଭ୍ୟ (ଆରମ୍ଭ କରି) ପ୍ର+ବିଶ୍—ପ୍ରବିଶ୍ୟ (ପ୍ରବେଶ କରି)
ପ୍ର+ସ୍ଥା—ପ୍ରସ୍ଥାୟ (ପ୍ରସ୍ଥାନ କରି) ସମ୍+ବନ୍ଧ—ସମ୍ବଧ୍ୟ (ସମ୍ବନ୍ଧ କରି)
ବି+ସୃଜ୍—ବିସୃଜ୍ୟ (ବିସର୍ଜନ କରି) ଅଧି+ଇ—ଅଧୀତ୍ୟ (ଅଧ୍ୟୟନ କରି)
ଆ+ରୁହ୍—ଆରୁହ୍ୟ (ଚଢ଼ି) ଆ+ହ୍ୱେ—ଆହୂୟ (ଆହ୍ୱାନ କରି)

## ତୁମୁନ୍ ପ୍ରତ୍ୟୟାନ୍ତ

ପ୍ରଚ୍ଛ—ପ୍ରଷ୍ଟୁମ୍ (ପଚାରିବା ପାଇଁ) ଗୈ—ଗାତୁମ୍ (ଗାନ କରିବା ପାଇଁ)
କ୍ରୀଡ୍—କ୍ରୀଡିତୁମ୍ (ଖେଳିବା ପାଇଁ) ନୀ—ନେତୁମ୍ (ନେବା ପାଇଁ)
ଜି—ଜେତୁମ୍ (ଜୟ କରିବା ପାଇଁ) ପଠ୍—ପଠିତୁମ୍ (ପଢ଼ିବା ପାଇଁ)
ତୃ—ତରିତୁମ୍ (ପାରହେବା ପାଇଁ) ମୁଚ୍—ମୋକ୍ତୁମ୍ (ମୋଚନ କରିବାପାଇଁ)
ତ୍ରୈ—ତ୍ରାତୁମ୍ (ରକ୍ଷା କରିବା ପାଇଁ) ଯା—ଯାତୁମ୍ (ଯିବା ପାଇଁ)
ଦଂଶ୍—ଦଂଷ୍ଟୁମ୍ (ଦଂଶନକରିବାପାଇଁ) ପା—ପାତୁମ୍ (ପାନ ବା ରକ୍ଷାକରିବାପାଇଁ)
ପଚ୍—ପକ୍ତୁମ୍ (ରାନ୍ଧିବା ପାଇଁ) ବ୍ରୂ—ବକ୍ତୁମ୍ (କହିବା ପାଇଁ)
ଭୂ—ଭବିତୁମ୍ (ହେବା ପାଇଁ) ତ୍ୟଜ୍—ତ୍ୟକ୍ତୁମ୍ (ତ୍ୟାଗ କରିବା ପାଇଁ)
ଯଜ୍—ଯଷ୍ଟୁମ୍ (ଯାଗ କରିବା ପାଇଁ) ଲଭ—ଲବ୍ଧୁମ୍ (ଲାଭ କରିବା ପାଇଁ)
କ୍ରୀ—କ୍ରେତୁମ୍ (କିଣିବା ପାଇଁ) ହନ୍—ହନ୍ତୁମ୍ (ହତ୍ୟା କରିବା ପାଇଁ)
ଗ୍ରହ୍—ଗ୍ରହୀତୁମ୍ (ଗ୍ରହଣ କରିବା ପାଇଁ) ଜ୍ଞା—ଜ୍ଞାତୁମ୍ (ଜାଣିବା ପାଇଁ)
ରୁଧ୍—ରୋଦ୍ଧୁମ୍ (ରୋକିବା ପାଇଁ) ଦା—ଦାତୁମ୍ (ଦାନ କରିବା ପାଇଁ)

## ପ୍ରଶ୍ନ

୧ । ସଂସ୍କୃତରେ ଅନୁବାଦ କର:—ଆଜିକାଲି ଲୋକେ ବ୍ୟୋମଯାନରେ ଚଢ଼ି ଆକାଶରେ ଗମନାଗମନ କରୁଅଛନ୍ତି । ଦିନେ ସାବିତ୍ରୀ ଶାଶୁଶ୍ୱଶୁରଙ୍କର ଅନୁମତି ନେଇ ବନଗମନୋଦ୍ୟତସ୍ୱାମୀଙ୍କର ଅନୁଗମନ କଲେ । ବାଟରେ ଯାଉଁ ଯାଉଁ ସତ୍ୟବାନ୍ ସାବିତ୍ରୀଙ୍କୁ ବନର ସୌନ୍ଦର୍ଯ୍ୟ ଓ ଏଣେତେଣେ ବୁଲୁଥିବା ହରିଣଶିଶୁମାନଙ୍କୁ ଦେଖାଇ ଦେଉଥିଲେ । ସୂର୍ଯ୍ୟ ପଶ୍ଚିମଦିଗରେ ଅସ୍ତ ହେବାରୁ ଗୋପାଳମାନେ ଗୋରୁପଲ ସହିତ (ଗୋହୂତ୍ୟା ସହ) ଗୋଠରୁ ଘରକୁ ଫେରିଲେ । କ୍ଷୁଧାରେ ବ୍ୟାକୁଳ ହୋଇ ଦରିଦ୍ରା ବାଳିକାଟି ବାଟପାଖରେ ଶୋଇଥିଲା ।

୨ । ସଂଶୋଧନ କର:— ବିପଦି ଯଃ ତ୍ୟଜତ୍ୱାଗଚ୍ଛତ୍ ତଂ ନ ବିଶ୍ୱସେତ୍ । ଲକ୍ଷ୍ମୀସ୍ତଂ ବାଳକା ନାସି ଆଗତବାନ୍ । ସୋ ମହନ୍ତି ବିପଦେ ନିପତିତ୍ୱା ମମ ଶରଣମାଗତଃ । ସ ମାଂ ଗନ୍ତୁମାଦିଶତ ।

---

## ବାଚ୍ୟ

ବାଚ୍ୟ ସାଧାରଣତଃ ତିନିପ୍ରକାର – କର୍ତ୍ତୃବାଚ୍ୟ, କର୍ମବାଚ୍ୟ ଓ ଭାବବାଚ୍ୟ ।
ବାଚ୍ୟରେ କ୍ରିୟା ଦୁଇପ୍ରକାର—ତିଙନ୍ତ କ୍ରିୟା ଓ କୃଦନ୍ତ କ୍ରିୟା ।

ତିଙନ୍ତ କ୍ରିୟା – ପଠତି, କ୍ରୀଡ଼ତି ଓ ଅହସତ୍ ଇତ୍ୟାଦି ।

କୃଦନ୍ତ କ୍ରିୟା—ଗତଃ, କୃତବାନ୍, କାର୍ଯ୍ୟମ୍ ଓ ପାଳନୀୟା ଇତ୍ୟାଦି ।

### ୧ । ତିଙନ୍ତ କ୍ରିୟାଯୁକ୍ତ ବାକ୍ୟ

(କ) କର୍ତ୍ତୃବାଚ୍ୟ – କର୍ତ୍ତୃବାଚ୍ୟରେ କର୍ତ୍ତାଠାରେ ପ୍ରଥମା ଓ କର୍ମଠାରେ ଦ୍ୱିତୀୟା ବିଭକ୍ତି ହୁଏ, କ୍ରିୟା କର୍ତ୍ତାର ପୁରୁଷ ଓ ବଚନ ଅନୁସାରେ ବ୍ୟବହୃତ ହୁଏ । ଯଥା: – ଅହଂ ଚନ୍ଦ୍ରଂ ପଶ୍ୟାମି ।

(ଖ) କର୍ମବାଚ୍ୟ – କର୍ମବାଚ୍ୟରେ କର୍ତ୍ତାଠାରେ ତୃତୀୟା ଓ କର୍ମଠାରେ ପ୍ରଥମା ବିଭକ୍ତି ହୁଏ ଏବଂ କ୍ରିୟା କର୍ମର ପୁରୁଷ ଓ ବଚନ ଅନୁସାରେ ବ୍ୟବହୃତ ହୁଏ । ଯଥା: – ବାଳକେନ ବିଦ୍ୟାଳୟଃ ଗମ୍ୟତେ ।

(ଗ) ଭାବବାଚ୍ୟ: — ଭାବବାଚ୍ୟରେ କର୍ତ୍ତାଠାରେ ତୃତୀୟା ବିଭକ୍ତି ହୁଏ, କର୍ମ ନ ଥାଏ ଓ କ୍ରିୟା ସର୍ବଦା ପ୍ରଥମପୁରୁଷରେ ଏକବଚନରେ ବ୍ୟବହୃତ ହୁଏ । ଯଥା: — ଅସ୍ମାଭିଃ କ୍ରୀଡ୍ୟତେ ।

## କୃଦନ୍ତ କ୍ରିୟାଯୁକ୍ତ ବାକ୍ୟ

(କ) କର୍ତ୍ତୃବାଚ୍ୟ: — କର୍ତ୍ତୃବାଚ୍ୟରେ କର୍ତ୍ତାଠାରେ ପ୍ରଥମା ଓ କର୍ମଠାରେ ଦ୍ୱିତୀୟା ବିଭକ୍ତି ହୋଇ କ୍ତ ଓ କ୍ତବତୁ ପ୍ରତ୍ୟୟାନ୍ତ ଅତୀତକାଳୀନ କୃଦନ୍ତ କ୍ରିୟାପଦର ଲିଙ୍ଗ, ବଚନ ଓ ବିଭକ୍ତି କର୍ତ୍ତା ଅନୁସାରେ ନିର୍ଦ୍ଧାରିତ ହୁଏ । ଯଥା: —

କ୍ତ — ତ୍ୱଂ ଗ୍ରାମଂ ଗତଃ । ସୀତା ଗୃହଂ ଗତା । ମିତ୍ରଂ ଉଦ୍ୟାନଂ ଗତମ୍ ।

କ୍ତବତୁ — ରାମଃ ରାବଣଂ ହତବାନ୍ । ରମା ବନ୍ୟାଂ ଦୃଷ୍ଟବତୀ । ମିତ୍ରମ୍ ଏତଦ୍ ଗୃହୀତବତ୍ ।

(ଖ) କର୍ମବାଚ୍ୟ: — କର୍ମବାଚ୍ୟରେ କର୍ତ୍ତାଠାରେ ତୃତୀୟା ଓ କର୍ମଠାରେ ପ୍ରଥମା ବିଭକ୍ତି ହୋଇ ଅତୀତକାଳୀନ କ୍ତ ତଥା ଭବିଷ୍ୟତ୍ ଓ ବିଧ୍ୟର୍ଥକ କୃତ୍ୟ (ତବ୍ୟ, ଅନୀୟ, ଣ୍ୟତ୍, ଣ୍ୟତ୍ ଓ ଯତ୍)ପ୍ରତ୍ୟୟାନ୍ତ କୃଦନ୍ତ କ୍ରିୟାପଦର ଲିଙ୍ଗ, ବଚନ ଓ ବିଭକ୍ତି କର୍ମ ଅନୁସାରେ ନିର୍ଦ୍ଧାରିତ ହୁଏ । ଯଥା: —

କ୍ତ — ଗୁରୁଣା ବେଦଃ ପଠିତଃ । ବ୍ରାହ୍ମଣେନ ଗୀତା ପଠିତା । ଛାତ୍ରେଣ ସାହିତ୍ୟଂ ପଠିତମ୍ ।

କୃତ୍ୟ — ଅସ୍ମାଭିଃ ଗ୍ରାମଃ ଗନ୍ତବ୍ୟଃ । ତ୍ୱୟା ନଦୀ ଦର୍ଶନୀୟା । ବାଳକେନ ବନଂ ଗନ୍ତବ୍ୟମ୍ ।

(ଗ) ଭାବବାଚ୍ୟ: — ଭାବବାଚ୍ୟରେ କର୍ତ୍ତାଠାରେ ତୃତୀୟା ବିଭକ୍ତି ହୁଏ ଓ ଅତୀତ କାଳୀନ କ୍ତ ଏବଂ ଭବିଷ୍ୟତ୍ ଓ ବିଧ୍ୟର୍ଥକ କୃତ୍ୟ ପ୍ରତ୍ୟୟାନ୍ତ କୃଦନ୍ତକ୍ରିୟାପଦ ସର୍ବଦା କ୍ଳୀବଲିଙ୍ଗ, ପ୍ରଥମା ବିଭକ୍ତ୍ୟନ୍ତ ଓ ଏକବଚନାନ୍ତ ହୁଏ । ଯଥା: —

ମୟା ହସିତମ୍ । ଯୁଷ୍ମାଭିଃ କଥନୀୟମ୍ ଇତ୍ୟାଦି ।

## କର୍ମ ଓ ଭାବବାଚ୍ୟରେ ତିଙନ୍ତ କ୍ରିୟାପଦ

କର୍ମ ଓ ଭାବବାଚ୍ୟରେ କେବଳ ଲଟ୍, ବିଧିଲିଙ୍, ଲୋଟ ଓ ଲଙ୍ ଲକାରରେ ପ୍ରତ୍ୟେକ ଧାତୁରୁ ଉତ୍ତର ଯ୍ ପ୍ରତ୍ୟୟ ହୁଏ ଏବଂ ସବୁ ଲକାରରେ ଧାତୁଗୁଡ଼ିକ ଆତ୍ମନେପଦୀ ହୁଅନ୍ତି । ଯଥା:—

ପଠ୍+ଯ୍—ପଠ୍ୟ, ଲଟ୍ ତେ—ପଠ୍ୟତେ ।

'ଯ' ପ୍ରତ୍ୟୟ ପରେ ଥିଲେ:—

(କ) ଦା, ଧା, ମା, ଗୈ (ଗା), ହା ଓ ପା (ପାନାର୍ଥକ) ଧାତୁର ଆକାର ସ୍ଥାନରେ ଈକାର ହୁଏ । ଯଥା:—ଦା—ଦୀୟତେ ଇତ୍ୟାଦି ।

(ଖ) ଧାତୁର ଶେଷରେ ଥିବା ହ୍ରସ୍ୱସ୍ୱର ଦୀର୍ଘ ହୁଏ । ଯଥା:—ଜି—ଜୀୟତେ ଇତ୍ୟାଦି ।

(ଗ) ଧାତୁର ଶେଷରେ ଥିବା ଋ ସ୍ଥାନରେ ରି ହୁଏ । ଯଥା:—କୃ—କ୍ରିୟତେ ଇତ୍ୟାଦି ।

(ଘ) ଧାତୁଶେଷରେ ଥିବା ୠ ସ୍ଥାନରେ ଈର୍ ହୁଏ । ଯଥା:—ତୄ—ତୀର୍ୟତେ ଇତ୍ୟାଦି ।

(ଙ) ଧାତୁର ଉପଧାସ୍ଥିତ ନକାରର ଲୋପ ହୁଏ । ଯଥା:—ବନ୍ଧ୍—ବଧ୍ୟତେ ଇତ୍ୟାଦି ।

(ଚ) ବଦ୍, ବସ୍, ବପ୍, ସ୍ୱପ୍ ଓ ବ୍ରୂ (ବଚ୍) ଧାତୁର ଅକାର ସହିତ ବ୍ ସ୍ଥାନରେ ଉ ଏବଂ ଯଜ୍ ଧାତୁର ଅକାର ସହିତ ଯ୍ ସ୍ଥାନରେ ଇ ହୁଏ । ଯଥା:—ବଦ୍—ଉଦ୍ୟତେ, ବସ୍—ଉଷ୍ୟତେ, ଯଜ୍—ଇଜ୍ୟତେ ଇତ୍ୟାଦି ।

(ଛ) ଣିଜନ୍ତ ଧାତୁର ଅନ୍ତସ୍ଥିତ ଇକାରର ଲୋପ ହୁଏ । ଯଥା:—ପାଠି—ପାଠ୍ୟତେ, ଭାବି—ଭାବ୍ୟତେ ଇତ୍ୟାଦି ।

କେତେକ ପ୍ରଚଳିତ ଧାତୁର କର୍ମ ଓ ଭାବବାଚ୍ୟରେ ପ୍ରଥମପୁରୁଷ ଏକବଚନରେ ନିଷ୍ପନ୍ନ କ୍ରିୟାପଦ ପରପୃଷ୍ଠାରେ ପ୍ରଦତ୍ତ ହେଲା ।

| | ଲଟ୍ | ବିଧିଲିଙ୍ | ଲୋଟ୍ | ଲଙ୍ | ଲୃଟ୍ |
|---|---|---|---|---|---|
| ପଠ୍— | ପଠ୍ୟତେ | ପଠ୍ୟେତ | ପଠ୍ୟତାମ୍ | ଅପଠ୍ୟତ | ପଠିଷ୍ୟତେ |
| ଦୃଶ୍— | ଦୃଶ୍ୟତେ | ଦୃଶ୍ୟେତ | ଦୃଶ୍ୟତାମ୍ | ଅଦୃଶ୍ୟତ | ଦ୍ରକ୍ଷ୍ୟତେ |
| ସ୍ତୁ— | ସ୍ତୂୟତେ | ସ୍ତୂୟେତ | ସ୍ତୂୟତାମ୍ | ଅସ୍ତୂୟତ | ସ୍ତୋଷ୍ୟତେ |
| କୃ— | କ୍ରିୟତେ | କ୍ରିୟେତ | କ୍ରିୟତାମ୍ | ଅକ୍ରିୟତ | କରିଷ୍ୟତେ |
| ହୃ— | ହ୍ରିୟତେ | ହ୍ରିୟେତ | ହ୍ରିୟତାମ୍ | ଅହ୍ରିୟତ | ହରିଷ୍ୟତେ |
| ମୃ— | ମ୍ରିୟତେ | ମ୍ରିୟେତ | ମ୍ରିୟତାମ୍ | ଅମ୍ରିୟତ | ମରିଷ୍ୟତେ |
| ସ୍ତୄ— | ସ୍ତୀର୍ୟତେ | ସ୍ତୀର୍ୟେତ | ସ୍ତୀର୍ୟତାମ୍ | ଅସ୍ତୀର୍ୟତ | ସ୍ତରିଷ୍ୟତେ |
| ତୄ— | ତୀର୍ୟତେ | ତୀର୍ୟେତ | ତୀର୍ୟତାମ୍ | ଅତୀର୍ୟତ | ତରିଷ୍ୟତେ |
| ବନ୍ଧ୍— | ବଧ୍ୟତେ | ବଧ୍ୟେତ | ବଧ୍ୟତାମ୍ | ଅବଧ୍ୟତ | ବନ୍ଧଷ୍ୟତେ |
| ମନ୍ଥ୍— | ମଥ୍ୟତେ | ମଥ୍ୟେତ | ମଥ୍ୟତାମ୍ | ଅମଥ୍ୟତ | ମନ୍ଥିଷ୍ୟତେ |
| ଦନ୍ଶ୍— | ଦଶ୍ୟତେ | ଦଶ୍ୟେତ | ଦଶ୍ୟତାମ୍ | ଅଦଶ୍ୟତ | ଦଂକ୍ଷ୍ୟତେ |
| ଭନ୍ଜ୍— | ଭଜ୍ୟତେ | ଭଜ୍ୟେତ | ଭଜ୍ୟତାମ୍ | ଅଭଜ୍ୟତ | ଭଂକ୍ଷ୍ୟତେ |
| ବ୍ରୂ— | ଉଚ୍ୟତେ | ଉଚ୍ୟେତ | ଉଚ୍ୟତାମ୍ | ଔଚ୍ୟତ | ବକ୍ଷ୍ୟତେ |
| ବଦ୍— | ଉଦ୍ୟତେ | ଉଦ୍ୟେତ | ଉଦ୍ୟତାମ୍ | ଔଦ୍ୟତ | ବଦଷ୍ୟତେ |
| ବସ୍— | ଉଷ୍ୟତେ | ଉଷ୍ୟେତ | ଉଷ୍ୟତାମ୍ | ଔଷ୍ୟତ | ବତ୍ସ୍ୟତେ |
| ଗମ୍— | ଗମ୍ୟତେ | ଗମ୍ୟେତ | ଗମ୍ୟତାମ୍ | ଅଗମ୍ୟତ | ଗଂସ୍ୟତେ |
| ବପ୍— | ଉପ୍ୟତେ | ଉପ୍ୟେତ | ଉପ୍ୟତାମ୍ | ଔପ୍ୟତ | ବପ୍ସ୍ୟତେ |
| ସ୍ୱପ୍— | ସୁପ୍ୟତେ | ସୁପ୍ୟେତ | ସୁପ୍ୟତାମ୍ | ଅସୁପ୍ୟତ | ସ୍ୱପ୍ସ୍ୟତେ |
| ଶୀ— | ଶୟ୍ୟତେ | ଶୟ୍ୟେତ | ଶୟ୍ୟତାମ୍ | ଅଶୟ୍ୟତ | ଶୟିଷ୍ୟତେ |
| କ୍ରୀଡ୍— | କ୍ରୀଡ୍ୟତେ | କ୍ରୀଡ୍ୟେତ | କ୍ରୀଡ୍ୟତାମ୍ | ଅକ୍ରୀଡ୍ୟତ | କ୍ରୀଡିଷ୍ୟତେ |
| ଦା— | ଦୀୟତେ | ଦୀୟେତ | ଦୀୟତାମ୍ | ଅଦୀୟତ | ଦାସ୍ୟତେ |

| | ଲଟ୍ | ବିଧିଲିଙ୍ | ଲୋଟ୍ | ଲଙ୍ | ଲୃଟ୍ |
|---|---|---|---|---|---|
| ଧା — | ଧୀୟତେ | ଧୀୟେତ | ଧୀୟତାମ୍ | ଅଧୀୟତ | ଧାସ୍ୟତେ |
| ଷ୍ଠା — | ଷ୍ଠୀୟତେ | ଷ୍ଠୀୟେତ | ଷ୍ଠୀୟତାମ୍ | ଅଷ୍ଠୀୟତ | ଷ୍ଠାସ୍ୟତେ |
| ମା — | ମୀୟତେ | ମୀୟେତ | ମୀୟତାମ୍ | ଅମୀୟତ | ମାସ୍ୟତେ |
| ଗୈ — | ଗୀୟତେ | ଗୀୟେତ | ଗୀୟତାମ୍ | ଅଗୀୟତ | ଗାସ୍ୟତେ |
| ଘ୍ରା — | ଘ୍ରାୟତେ | ଘ୍ରାୟେତ | ଘ୍ରାୟତାମ୍ | ଅଘ୍ରାୟତ | ଘ୍ରାସ୍ୟତେ |
| ପା — | ପୀୟତେ | ପୀୟେତ | ପୀୟତାମ୍ | ଅପୀୟତ | ପାସ୍ୟତେ |
| ଜି — | ଜୀୟତେ | ଜୀୟେତ | ଜୀୟତାମ୍ | ଅଜୀୟତ | ଜେଷ୍ୟତେ |
| ଶ୍ରୁ — | ଶ୍ରୂୟତେ | ଶ୍ରୂୟେତ | ଶ୍ରୂୟତାମ୍ | ଅଶ୍ରୂୟତ | ଶ୍ରୋଷ୍ୟତେ |
| ଚି — | ଚୀୟତେ | ଚୀୟେତ | ଚୀୟତାମ୍ | ଅଚୀୟତ | ଚେଷ୍ୟତେ |
| ଗ୍ରହ୍ — | ଗୃହ୍ୟତେ | ଗୃହ୍ୟେତ | ଗୃହ୍ୟତାମ୍ | ଅଗୃହ୍ୟତ | ଗ୍ରହୀଷ୍ୟତେ |
| ପ୍ରଚ୍ଛ୍ — | ପୃଚ୍ଛ୍ୟତେ | ପୃଚ୍ଛ୍ୟେତ | ପୃଚ୍ଛ୍ୟତାମ୍ | ଅପୃଚ୍ଛ୍ୟତ | ପ୍ରକ୍ଷ୍ୟତେ |
| ଯଜ୍ — | ଇଜ୍ୟତେ | ଇଜ୍ୟେତ | ଇଜ୍ୟତାମ୍ | ଐଜ୍ୟତ | ଯକ୍ଷ୍ୟତେ |
| ହ୍ୱେ — | ହୂୟତେ | ହୂୟେତ | ହୂୟତାମ୍ | ଅହୂୟତ | ହ୍ୱାସ୍ୟତେ |
| ଶାସ୍ — | ଶିଷ୍ୟତେ | ଶିଷ୍ୟେତ | ଶିଷ୍ୟତାମ୍ | ଅଶିଷ୍ୟତ | ଶାସିଷ୍ୟତେ |
| ଜନ୍ — | ଜନ୍ୟତେ | ଜନ୍ୟେତ | ଜନ୍ୟତାମ୍ | ଅଜନ୍ୟତ | ଜନିଷ୍ୟତେ |
| ଖନ୍ — | ଖନ୍ୟତେ | ଖନ୍ୟେତ | ଖନ୍ୟତାମ୍ | ଅଖନ୍ୟତ | ଖନିଷ୍ୟତେ |
| ହନ୍ — | ହନ୍ୟତେ | ହନ୍ୟେତ | ହନ୍ୟତାମ୍ | ଅହନ୍ୟତ | ହନିଷ୍ୟତେ |
| ଲଭ୍ — | ଲଭ୍ୟତେ | ଲଭ୍ୟେତ | ଲଭ୍ୟତାମ୍ | ଅଲଭ୍ୟତ | ଲପ୍ସ୍ୟତେ |
| ଷ୍ଠା+ଣିଚ୍-- | ଷ୍ଠାପ୍ୟତେ | ଷ୍ଠାପ୍ୟେତ | ଷ୍ଠାପ୍ୟତାମ୍ | ଅଷ୍ଠାପ୍ୟତ | ଷ୍ଠାପୟିଷ୍ୟତେ |
| କୃ+ଣିଚ୍-- | କାର୍ଯ୍ୟତେ | କାର୍ଯ୍ୟେତ | କାର୍ଯ୍ୟତାମ୍ | ଅକାର୍ଯ୍ୟତ | କାରୟିଷ୍ୟତେ |

## କର୍ମକର୍ତ୍ତୃବାଚ୍ୟ



ଉପରି ଲିଖିତ ବାଚ୍ୟବ୍ୟତୀତ କର୍ମକର୍ତ୍ତୃନାମକ ଏକପ୍ରକାର ବାଚ୍ୟ ଅଛି । ଯେଉଁଠାରେ କର୍ମ କର୍ତ୍ତାର ଯତ୍ନବ୍ୟତୀତ ସିଦ୍ଧ ହେଲା ପରି ଜଣାଯାଏ, ସେହିଠାରେ କର୍ମକର୍ତ୍ତୃବାଚ୍ୟ ବ୍ୟବହୃତ ହୁଏ । ଏହି ବାଚ୍ୟରେ କର୍ତ୍ତାଠାରେ ପ୍ରଥମା ବିଭକ୍ତି (କର୍ତ୍ତୃବାଚ୍ୟ ପରି) ହୁଏ ଓ କ୍ରିୟା କର୍ମବାଚ୍ୟ ଆକାରରେ ରହି କର୍ତ୍ତାର ଅନୁଗାମିନୀ ହୁଏ । ଯଥା:—'ବୃକ୍ଷଃ ଛିଦ୍ୟତେ' ଏହି ବାକ୍ୟଟି କର୍ତ୍ତୃବାଚ୍ୟରେ 'ରାମଃ ବୃକ୍ଷଂ ଛିନତ୍ତି' ଏହିପରି ଥିଲା । କର୍ମକର୍ତ୍ତୃବାଚ୍ୟରେ ମୂଳ କର୍ତ୍ତାଟି ଅବିବକ୍ଷିତ ହୋଇ କର୍ମ ପ୍ରଥମା ବିଭକ୍ତ୍ୟନ୍ତ (ବୃକ୍ଷଃ) ହୋଇ 'ଛିଦ୍ୟତେ' କ୍ରିୟାର କର୍ତ୍ତା ହେଲା । କର୍ତ୍ତାର ଯତ୍ନ ବ୍ୟତୀତ ବୃକ୍ଷ ଯେପରି ନିଜେ କଟା ହେଉଅଛି, ଏହିପରି ଭାବ ପ୍ରକାଶ କରୁଅଛି । ସେହିପରି କାଷ୍ଠଂ ଭିଦ୍ୟତେ ଓ ଅନ୍ନଂ ପଚ୍ୟତେ ଇତ୍ୟାଦି ହୁଏ ।

## ବାଚ୍ୟପରିବର୍ତ୍ତନ

ବାଚ୍ୟପରିବର୍ତ୍ତନ କଲାବେଳେ କର୍ତ୍ତା, କର୍ମ ଓ ସମାପିକା କ୍ରିୟା ଏବଂ କର୍ତ୍ତା ତଥା କର୍ମର ବିଶେଷଣର ପରିବର୍ତ୍ତନ କରାଯାଏ । ଅସମାପିକା କ୍ରିୟା ଓ ତାହା କର୍ମର ଏବଂ ଅନ୍ୟ କୌଣସି ବିଭକ୍ତ୍ୟନ୍ତପଦର ପରିବର୍ତ୍ତନ କରାଯାଏ ନାହିଁ ।

କ୍ରିୟା ସକର୍ମକ ହୋଇଥିଲେ କର୍ତ୍ତୃବାଚ୍ୟର ବାକ୍ୟକୁ କର୍ମବାଚ୍ୟରେ, କ୍ରିୟା ଅକର୍ମକ ହୋଇଥିଲେ କର୍ତ୍ତୃବାଚ୍ୟର ବାକ୍ୟକୁ ଭାବବାଚ୍ୟରେ, କର୍ମ ଓ ଭାବବାଚ୍ୟର ବାକ୍ୟକୁ କର୍ତ୍ତୃବାଚ୍ୟରେ ଏବଂ କର୍ମକର୍ତ୍ତୃବାଚ୍ୟର ବାକ୍ୟକୁ ଭାବବାଚ୍ୟରେ ପରିବର୍ତ୍ତନ କରାଯାଏ । ଯଥା:—

| କର୍ତ୍ତୃବାଚ୍ୟ (ସକର୍ମକ ତିଙନ୍ତ କ୍ରିୟା) | କର୍ମବାଚ୍ୟ |
|---|---|
| ସର୍ପଃ ଶିଶୁଂ ଦଶତି— | ସର୍ପେଣ ଶିଶୁଃ ଦଶ୍ୟତେ । |
| ସ ଉପଦେଶଂ ଗୃହ୍ଣାତି— | ତେନ ଉପଦେଶଃ ଗୃହ୍ୟତେ । |
| ତ୍ୱଂ ଦରିଦ୍ରାୟ ଧନଂ ଦେହି— | ତ୍ୱୟା ଦରିଦ୍ରାୟ ଧନଂ ଦୀୟତାମ୍ । |
| ରାମଃ ବାକ୍ୟଂ ବଦତି— | ରାମେଣ ବାକ୍ୟମୁଦ୍ୟତେ । |

| | |
|---|---|
| ଅହଂ ମୂଷିକମେକଂ ପ୍ରାପ୍ନୋମି — | ମୟା ମୂଷିକଃ ଏକଃ ପ୍ରାପ୍ୟତେ । |
| ବାନରଃ ରାଜାନମବଦତ୍ — | ବାନରେଣ ରାଜା ଊଦ୍ୟତ । |
| ନାହଂ ଜାନେ ତବ ମହିମାନମ୍ — | ନ ମୟା ଜ୍ଞାୟତେ ତବ ମହିମା । |
| ସତୀ ଦେହମତ୍ୟଜତ୍— | ସତ୍ୟା ଦେହଃ ଅତ୍ୟଜ୍ୟତ । |
| ତେ ମାଂ ପଠନ୍ତମପଶ୍ୟନ୍ — | ତୈଃ ଅହଂ ପଠନ୍ ଅଦୃଶ୍ୟେ । |
| ରାମଃ ଭିକ୍ଷୁକାୟ ଭିକ୍ଷାଂ ଦଦାତି — | ରାମେଣ ଭିକ୍ଷୁକାୟ ଭିକ୍ଷା ଦୀୟତେ । |
| ଭୃତ୍ୟଃ ଭାରମବହତ୍ — | ଭୃତ୍ୟେନ ଭାରଃ ଊହ୍ୟତ । |
| ବାଳକାଃ ସର୍ପାନ୍ ପୀଡ଼ୟନ୍ତି— | ବାଳକୈଃ ସର୍ପାଃ ପୀଡ଼୍ୟନ୍ତେ । |
| ଛିନ୍ଧି ତ୍ୱମେନଂ ବୃକ୍ଷମ୍ — | ଛିଦ୍ୟତାଂ ତ୍ୱୟା ଅୟଂ ବୃକ୍ଷଃ । |
| ଯଦୁଃ ଭ୍ରାତୄନ୍ ପୃଚ୍ଛତୁ— | ଯଦୁନା ଭ୍ରାତରଃ ପୃଚ୍ଛ୍ୟନ୍ତାମ୍ । |

### କର୍ତ୍ତୃବାଚ୍ୟ (ସକର୍ମକ ଅତୀତକାଳୀନ କୃଦନ୍ତ କ୍ରିୟା) କର୍ମବାଚ୍ୟ

| | |
|---|---|
| [କ୍ତ କମ୍ବା କ୍ତବତୁ ପ୍ରତ୍ୟୟାନ୍ତ ପଦ] | [କ୍ତ ପ୍ରତ୍ୟୟାନ୍ତ ପଦ] |
| ରାମଃ ତ୍ୱାମତ୍ର ଦୃଷ୍ଟବାନ୍ — | ରାମେଣ ତ୍ୱମତ୍ର ଦୃଷ୍ଟଃ । |
| ଅହଂ ବନଂ ଗତବାନ୍— | ମୟା ବନଂ ଗତମ୍ । |
| ତେ ଗ୍ରାମଂ ଗତାଃ — | ତୈଃ ଗ୍ରାମଃ ଗତଃ । |
| ତେ ନଦ୍ୟାଃ ବାରି ଆନୀତବନ୍ତଃ— | ତୈଃ ନଦ୍ୟାଃ ବାରି ଆନୀତମ୍ । |
| ଅହଂ ଦ୍ୱୌ ବାଳକୌ ଦୃଷ୍ଟବାନ୍— | ମୟା ଦ୍ୱୌ ବାଳକୌ ଦୃଷ୍ଟୌ । |
| ସ ଦୁଃଖଂ ସୋଢ଼ବାନ୍— | ତେନ ଦୁଃଖଂ ସୋଢ଼ମ୍ । |
| ତେ ଇମଂ ଦୂରୀକୃତବନ୍ତଃ — | ତୈଃ ଅୟଂ ଦୂରୀକୃତଃ । |
| ମିତ୍ରଂ ମାନନୁଗୃହୀତବତ୍ — | ମିତ୍ରେଣ ଅହମନୁଗୃହୀତଃ । |

ଉକ୍ତ ବାକ୍ୟଗୁଡ଼ିକ କର୍ମବାଚ୍ୟରୁ କର୍ତ୍ତୃବାଚ୍ୟରେ ପରିବର୍ତ୍ତିତର ଉଦାହରଣରୂପେ ଗୃହୀତ ହେବ ।

### କର୍ତ୍ତୃବାଚ୍ୟ (ଅକର୍ମକ ତିଙନ୍ତ କ୍ରିୟା) ଭାବବାଚ୍ୟ

| | |
|---|---|
| ବାଳକାଃ ଗାୟନ୍ତି— | ବାଳକାଭିଃ ଗୀୟତେ |
| ରାମୋ ରାଜା ଅଭବତ୍ — | ରାମେଣ ରାଜ୍ଞା ଅଭୂୟତ । |

ନଦ୍ୟାଃ ଜଳଂ ନିର୍ମଳଂ ଭବତି— ନଦ୍ୟାଃ ଜଳେନ ନିର୍ମଳେନ ଭୂୟତେ ।
ଶିବାସ୍ତେ ସନ୍ତୁ ପନ୍ଥାନଃ— ଶିବୈଃ ତେ ଭୂୟତାଂ ପଥିଭିଃ ।
କ୍ରୀଡ଼ା ବାଳକାୟ ରୋଚତେ— କ୍ରୀଡ଼ୟା ବାଳକାୟ ରୁଚ୍ୟତେ ।
ଇମେ ପକ୍ଷିଣଃ ମଧୁରଂ ଗାୟନ୍ତି — ଏଭିଃ ପକ୍ଷିଭିଃ ମଧୁରଂ ଗୀୟତେ ।
ତେ ସନ୍ତୁଷ୍ଟାଃ ସୁଖଂ ନିବସନ୍ତି ସ୍ମ — ତୈଃ ସନ୍ତୁଷ୍ଟୈଃ ସୁଖଂ ନ୍ୟୁଷ୍ୟତେ ସ୍ମ ।
ଗଚ୍ଛନ୍ ବାଳକଃ ଅପତତ୍ — ଗଚ୍ଛତା ବାଳକେନ ଅପତ୍ୟତ ।
ବଦ୍ଧାଂହଃ ନମ୍ରାଃ ଭବନ୍ତୁ — ବଦ୍ଧଭିଃ ନମ୍ରୈଃ ଭୂୟତେ ।
ଶିଶବଃ ଶଯ୍ୟାୟାଂ ଶେରତେ — ଶିଶୁଭିଃ ଶଯ୍ୟାୟାଂ ଶୟ୍ୟତେ ।
ପକ୍ଷିଣୋ ବୃକ୍ଷେ ବସନ୍ତି — ପକ୍ଷିଭିଃ ବୃକ୍ଷେ ଉଷ୍ୟତେ ।
ଶିଶୁଃ ସୁଖଂ ଶେତେ — ଶିଶୁନା ସୁଖଂ ଶୟ୍ୟତେ ।
ସ ମାଂ ଦ୍ରଷ୍ଟୁଂ ବଦତି — ତେନ ମାଂ ଦ୍ରଷ୍ଟୁମୁଦ୍ୟତେ ।
ରାମଃ ସୀତାଂ ବକ୍ତୁମିଚ୍ଛତି — ରାମେଣ ସୀତାଂ ବକ୍ତୁମିଷ୍ୟତେ ।

କର୍ତ୍ତୃବାଚ୍ୟ (ଅକର୍ମକ ଅତୀତକାଳୀନ କୃଦନ୍ତ କ୍ରିୟା) ଭାବବାଚ୍ୟ
[କ୍ତ କ୍ତବତୁ ପ୍ରତ୍ୟୟାନ୍ତ ପଦ] [କ୍ତ ପ୍ରତ୍ୟୟାନ୍ତ ପଦ]

ଶିବଃ ହିମାଳୟମଧ୍ୟସ୍ଥିତଃ — ଶିବେନ ହିମାଳୟମଧ୍ୟସ୍ଥିତମ୍ ।
ତତଃ ଅହଂ ସୁପ୍ତଃ — ତତଃ ମୟା ସୁପ୍ତମ୍ ।
ରାମଃ ତତ୍ର ଗଚ୍ଛନ୍ ସ୍ଥିତବାନ୍— ରାମେଣ ତତ୍ର ଗଚ୍ଛତା ସ୍ଥିତମ୍ ।

ଉକ୍ତ ବାକ୍ୟଗୁଡ଼ିକ ଭାବବାଚ୍ୟରୁ କର୍ତ୍ତୃବାଚ୍ୟରେ ପରିବର୍ତ୍ତନର ଉଦାହରଣରୂପେ ଗୃହୀତ ହେବ ।

କର୍ମବାଚ୍ୟ ( ଭବିଷ୍ୟତ୍ ଓ ବିଧିଅର୍ଥକ କୃଦନ୍ତ କ୍ରିୟା ) କର୍ତ୍ତୃବାଚ୍ୟ
[ କୃତ୍ୟ ପ୍ରତ୍ୟୟାନ୍ତ ପଦ ] [ ବିଧିଲିଙ୍ ବା ଲୃଟ୍ଲକାରର କ୍ରିୟା ]

ଇଦଂ କର୍ମ ତ୍ୱୟା ଅବଶ୍ୟଂ କର୍ତ୍ତବ୍ୟମ୍—ଇଦଂ କର୍ମ ତ୍ୱମବଶ୍ୟଂ କୁର୍ଯ୍ୟାଃ ।
ଗଙ୍ଗା ଦେବୈରପି ସେବ୍ୟା— ଗଙ୍ଗାଂ ଦେବାଃ ଅପି ସେବେରନ୍ ।
ତୟା ପୁତ୍ରୋଽୟଂ ମର୍କଟାତ୍ ରକ୍ଷଣୀୟଃ-ସା ପୁତ୍ରମିମଂ ମର୍କଟାତ୍ ରକ୍ଷିଷ୍ୟତି
ସର୍ବୈଃ କୁସଙ୍ଗଃ ହେୟଃ — ସର୍ବେ କୁସଙ୍ଗଂ ଜହ୍ୟୁଃ (ହାସ୍ୟନ୍ତି) ।
ଶିବୋ ମୟା ସ୍ତୁତ୍ୟଃ — ଶିବମହଂ ସ୍ତୋଷ୍ୟାମି ।

ଅସ୍ମାଭିଃ ଗ୍ରାମଃ ଗନ୍ତବ୍ୟଃ— ବୟଂ ଗ୍ରାମଂ ଗମିଷ୍ୟାମଃ ।
ଇଦଂ ମୟା କର୍ତ୍ତବ୍ୟମ୍— ଇଦମହଂ କରିଷ୍ୟାମି (କୁର୍ଯ୍ୟାମ୍)

ଭାବବାଚ୍ୟ ( ଭବିଷ୍ୟତ୍ ଓ ବିଧ୍ୟର୍ଥକ କୃଦନ୍ତ କ୍ରିୟା ) କର୍ତ୍ତୃବାଚ୍ୟ
[କୃତ୍ୟ ପ୍ରତ୍ୟୟାନ୍ତ ପଦ] [ବିଧିଲିଙ୍ ବା ଲୃଟ୍ ଲକାରର କ୍ରିୟା]

ଜଳାନ୍ତେ ଦୁଷ୍ଟଗ୍ରାହେଣ ଭାବ୍ୟମ୍— ଜଳାନ୍ତେ ଦୁଷ୍ଟଗ୍ରାହଃ ଭବେତ୍ ।
ଅସ୍ମାଭିଃ ଗୃହେ ସ୍ଥାତବ୍ୟମ୍— ବୟଂ ଗୃହେ ସ୍ଥାସ୍ୟାମଃ ।
ପନ୍ନଗୈଃ ସହ ନ କ୍ରୀଡ଼ିତବ୍ୟମ୍— ପନ୍ନଗୈଃ ସହ ନ କ୍ରୀଡ଼େତ୍ ।
ତ୍ୱୟା ପୁନଃ ମୟା ସହ ପ୍ରବେଷ୍ଟବ୍ୟମ୍—ତ୍ୱଂ ପୁନଃ ମୟା ସହ ପ୍ରବେକ୍ଷ୍ୟସି ।
କେନାପି କାରଣେନ ଭବିତବ୍ୟମ୍—କମପି କାରଣଂ ଭବିଷ୍ୟତି (ଭବେତ୍) ।

କର୍ମକର୍ତ୍ତୃବାଚ୍ୟ ଭାବବାଚ୍ୟ
ବୃକ୍ଷାଃ ଛିଦ୍ୟନ୍ତେ— ବୃକ୍ଷୈଃ ଛିଦ୍ୟତେ ।
ଅନ୍ନଂ ପଚ୍ୟତେ — ଅନ୍ନେନ ପଚ୍ୟତେ ।

## ଦ୍ୱିକର୍ମକକ୍ରିୟାର ବାଚ୍ୟପରିବର୍ତ୍ତନ

ଦୁହ୍, ଯାଚ, ପଚ୍, ଦଣ୍ଡ୍, ରୁଧ୍, ପ୍ରଚ୍ଛ୍, ଚି, ବ୍ରୂ, ଶାସ୍, ଜି, ମନ୍ଥ୍ ଓ ମୁଷ୍ ଦୁହାଦି ଦ୍ୱିକର୍ମକ ଧାତୁ ଏବଂ ନୀ, ହୃ, କୃଷ୍ ଓ ବହ୍ ନ୍ୟାଦି ଦ୍ୱିକର୍ମକ ଧାତୁ । କର୍ମ ଦୁଇ ପ୍ରକାର । ଯଥା:—ପ୍ରଧାନ ଓ ଅପ୍ରଧାନ ।

ଯେଉଁ କର୍ମଠାରେ ଅନ୍ୟକାରକର ସମ୍ଭାବନା କରାଯାଏ ନାହିଁ ଏବଂ ଯେଉଁ କର୍ମର କ୍ରିୟାସହିତ ବିଶେଷ ସମ୍ପର୍କ ଥାଏ, ତାହାକୁ ପ୍ରଧାନ କର୍ମ ଓ ଅନ୍ୟଟିକୁ ଅପ୍ରଧାନ କର୍ମ କହନ୍ତି । ଯଥା: —

'ଗୋପାଳଃ ଗାଂ ଦୁଗ୍ଧଂ ଦୋଗ୍ଧି' ଏଠାରେ କର୍ମ 'ଗାମ୍'ଠାରେ ଅପାଦାନ 'ଗୋଃ' ହେବାର ସମ୍ଭାବନା କରାଯାଉଅଛି, ଏଣୁ ଗାମ୍ ଅପ୍ରଧାନ କର୍ମ ଓ ଦୁଗ୍ଧମ୍ ପ୍ରଧାନ କର୍ମ ।

'ସେନାପତିଃ ସୈନ୍ୟାନ୍ ଯୁଦ୍ଧକ୍ଷେତ୍ରଂ ନୟତି' ଏଠାରେ ନେବା କ୍ରିୟାଦ୍ୱାରା ପ୍ରକୃତରେ ସୈନ୍ୟମାନେ ଆକୃଷ୍ଟ ହେଉଥିବାରୁ ସୈନ୍ୟାନ୍ ପ୍ରଧାନ କର୍ମ ଓ ଯୁଦ୍ଧକ୍ଷେତ୍ରମ୍ ଅପ୍ରଧାନ କର୍ମ ।

* କର୍ମବାଚ୍ୟରେ ଦୁହାଦିମାନଙ୍କର ଅପ୍ରଧାନ କର୍ମଠାରେ ପ୍ରଥମା ବିଭକ୍ତି ଏବଂ ନୀଆଦିମାନଙ୍କର ପ୍ରଧାନ କର୍ମଠାରେ ପ୍ରଥମା ବିଭକ୍ତି ହୁଏ । ଯଥା:—

ଦୁହାଦି—ଗୋପାଳେନ ଗୌଃ ଦୁଗ୍‌ଧଂ ଦୁହ୍ୟତେ ।

ନୀଆଦି—ସେନାପତିନା ସୈନ୍ୟାଃ ଯୁଦ୍ଧକ୍ଷେତ୍ରଂ ନୀୟନ୍ତେ ।

ଣିଜନ୍ତ ଦ୍ୱିକର୍ମକକ୍ରିୟାର କର୍ମବାଚ୍ୟରେ ମୂଳତଃ † ପ୍ରୟୋଜ୍ୟ କର୍ମଠାରେ ପ୍ରଥମା ବିଭକ୍ତି ହୁଏ । ଯଥା:—

ଗୁରୁଃ ଛାତ୍ରଂ ବେଦଂ ପାଠୟତି—ଗୁରୁଣା ଛାତ୍ରଃ ବେଦଂ ପାଠ୍ୟତେ ।

ଦୁହାଦି

| କର୍ତ୍ତୃବାଚ୍ୟ | କର୍ମବାଚ୍ୟ |
|---|---|
| ଗୋପଃ ଗାଂ ଦୁଗ୍‌ଧଂ ଦୋଗ୍‌ଧି— | ଗୋପେନ ଗୌଃ ଦୁଗ୍‌ଧଂ ଦୁହ୍ୟତେ । |
| ବାମନଃ ବଳିଂ ବସୁଧାଂ ଯାଚତେ— | ବାମନେନ ବଳିଃ ବସୁଧାଂ ଯାଚ୍ୟତେ । |
| ପାଚକଃ ତଣ୍ଡୁଲାନ୍ ଅନ୍ନଂ ପଚତି— | ପାଚକେନ ତଣ୍ଡୁଲାଃ ଅନ୍ନଂ ପଚ୍ୟନ୍ତେ । |
| ନଗରପତିଃ ଚୌରଂ ଶତମଦଣ୍ଡୟତ୍— | ନଗରପତିନା ଚୌରଃ ଶତମଦଣ୍ଡ୍ୟତ । |
| ରାଜା ଚୌରଂ କାରାଗାରଂ ରୁଣଦ୍ଧି— | ରାଜ୍ଞା ଚୌରଂ କାରାଗାରଃ ରୁଧ୍ୟତେ । |
| ଶିକ୍ଷକଃ ଛାତ୍ରଂ ପ୍ରଶ୍ନଂ ପୃଚ୍ଛତି— | ଶିକ୍ଷକେଣ ଛାତ୍ରଃ ପ୍ରଶ୍ନଂ ପୃଚ୍ଛ୍ୟତେ । |
| ରାମଃ ବୃକ୍ଷଂ ପୁଷ୍ପଂ ଚିନୋତି— | ରାମେଣ ବୃକ୍ଷଃ ପୁଷ୍ପଂ ଚୀୟତେ । |
| ତେ ମାଂ କମବ୍ରୁବନ୍— | ତୈଃ ଅହଂ କମ୍ ଊଚେ । |
| ଗୁରୁଃ ଛାତ୍ରଂ ଧର୍ମଂ ଶାସ୍ତି— | ଗୁରୁଣା ଛାତ୍ରଃ ଧର୍ମଂ ଶିଷ୍ୟତେ । |
| ରାଜା ଶତ୍ରୁଂ ଶତଂ ଜୟତି— | ରାଜ୍ଞା ଶତ୍ରୁଃ ଶତଂ ଜୀୟତେ । |

---

* ଅପ୍ରଧାନେ ଦୁହାଦୀନାଂ ପ୍ରଧାନେ ନୀହୃକୃଷ୍‌ବହାମ୍ ।
ବିଭକ୍ତିଃ ପ୍ରଥମା ଜ୍ଞେୟା ଦ୍ୱିତୀୟା ସ୍ୟାଦ୍‌ଦନ୍ୟତଃ ।

† ଅଣିଜନ୍ତ ଅବସ୍ଥାରେ ଯେ କର୍ତ୍ତା ହୋଇଥାଏ, ଣିଜନ୍ତ ହେଲେ ସେ କର୍ମ ହୋଇଯାଏ । ଏହି କର୍ମକୁ ପ୍ରୟୋଜ୍ୟ କର୍ମ କହନ୍ତି । ଯଥା:—

ଅଣିଜନ୍ତ—ଛାତ୍ରଃ ବେଦଂ ପଠତି । ଣିଜନ୍ତ—ଗୁରୁଃ ଛାତ୍ରଂ ବେଦଂ ପାଠୟତି (ଛାତ୍ର ପ୍ରୟୋଜ୍ୟ) ।

ହରିଃ ସମୁଦ୍ରମମୃତଂ ମଥ୍ନାତି ସ୍ମ—ହରିଣା ସମୁଦ୍ରଃ ଅମୃତଂ ମଥ୍ୟତେ ସ୍ମ ।
ଭୃତ୍ୟଃ ମାଂ ହାରଂ ମୁଷ୍ଣାତି—ଭୃତ୍ୟେନ ଅହଂ ହାରଂ ମୁଷ୍ୟେ ।

## ନ୍ୟାଦି

ଯୋଗୀ ଶିଷ୍ୟାନ୍ ଗ୍ରାମଂ ନୟତୁ—ଯୋଗିନା ଶିଷ୍ୟାଃ ଗ୍ରାମଂ ନୀୟନ୍ତାମ୍ ।
ବିପ୍ରଃ ଗାଂ ଗ୍ରାମଂ ହରତି—ବିପ୍ରେଣ ଗୌଃ ଗ୍ରାମଂ ହ୍ରିୟତେ ।
ପ୍ରଭୁଃ ଭୃତ୍ୟଂ ଗୃହଂ କର୍ଷତି—ପ୍ରଭୁଣା ଭୃତ୍ୟଃ ଗୃହଂ କୃଷ୍ୟତେ ।
ଶ୍ରମିକଃ ପଦାର୍ଥାନ୍ ଆପଣଂ ବହତି—ଶ୍ରମିକେଣ ପଦାର୍ଥାଃ ଆପଣମୁହ୍ୟନ୍ତେ ।

## ଣିଜନ୍ତ

ହରିଃ ଶ୍ୟାମଂ ଗ୍ରାମଂ ଗମୟତି—ହରିଣା ଶ୍ୟାମଃ ଗ୍ରାମଂ ଗମ୍ୟତେ ।
ମାତା ପୁତ୍ରମନ୍ନଂ ଭୋଜୟତି—ମାତ୍ରା ପୁତ୍ରଃ ଅନ୍ନଂ ଭୋଜ୍ୟତେ ।

## ପ୍ରଶ୍ନ

୧ । ବାଚ୍ୟପରିବର୍ତ୍ତନ କର:—ତବ ହସ୍ତାତ୍ ସ ଫଳଂ ଗୃହ୍ଣାତି । ବ୍ରାହ୍ମଣେନ ବେଦଃ ପଠ୍ୟତେ । ସର୍ବେ ଗୁଣିନଂ ପୂଜୟନ୍ତି । ଶ୍ରାନ୍ତେନ ପଥିକେନ ଜଳଂ ପୀୟତେ । ମୟା ତବ ମହିମା ନ ଜ୍ଞାୟତେ । ତ୍ୱଂ ପ୍ରାତଃ ବିଦ୍ୟାଳୟମଗଚ୍ଛଃ । ରମେଶେଣ ଭିକ୍ଷୁକାୟ ଭିକ୍ଷା ଦୀୟତେ । ରମେଶେଣ ସୀତାଂ ବକ୍ତୁମିଷ୍ୟତେ । ପିତ୍ରା ପୁତ୍ରଃ ଦର୍ଶିତଃ । ବାଳକାଃ ବିଦ୍ୟାଳୟେ କ୍ରୀଡନ୍ତି । କେନ ଇଦଂ ବକ୍ତୁଂ ଶକ୍ୟତେ । ଭିକ୍ଷୁକଃ ଭିକ୍ଷାଂ ଧନିନଂ ଯାଚିତବାନ୍ ।

୨ । କର୍ମ ଓ ଭାବବାଚ୍ୟ ଅନୁସାରେ ସଂସ୍କୃତରେ ଅନୁବାଦ କର:—
ପରମପିତା ଭଗବାନଙ୍କ ମହିମା ଅସୀମ । କେହି କେହି ନିଜର ମଙ୍ଗଳ କାମନା କରନ୍ତି । ଶବରମାନେ ବଣରେ ବାଘ ଦେଖିଥିଲେ । ବିଚାର ନ କରି ଆମ୍ଭମାନଙ୍କର କାମ କରିବା ଉଚିତ ନୁହେଁ । ସେମାନେ ଏହି କାମ ନିଶ୍ଚୟ କରିବେ ।

---

# ଏକପଦରେ ପ୍ରକାଶ

( ଏହା ବିଭିନ୍ନ ପ୍ରସଙ୍ଗରେ କରାଯାଇଥାଏ )

## ସ୍ତ୍ରୀପ୍ରତ୍ୟୟ

କ୍ଷତ୍ରିୟସ୍ୟ ପତ୍ନୀ — କ୍ଷତ୍ରିୟୀ
କ୍ଷତ୍ରିୟଜାତୀୟା ସ୍ତ୍ରୀ — କ୍ଷତ୍ରିୟା ।
ଯବନାନାଂ ଲିପିଃ — ଯବନାନୀ ।
ଯବନସ୍ୟ ସ୍ତ୍ରୀ — ଯବନୀ ।
ଦୁଷ୍ଟଃ ଯବଃ — ଯବାନୀ ।
ମହତ୍ ହିମମ୍ — ହିମାନୀ ।
ମହତ୍ ଅରଣ୍ୟମ୍ — ଅରଣ୍ୟାନୀ ।
ଇନ୍ଦ୍ରସ୍ୟ ଜାୟା — ଇନ୍ଦ୍ରାଣୀ ।
ଅନ୍ତଃ ଅସ୍ତି ଯସ୍ୟାଃ — ଅନ୍ତର୍ବତ୍ନୀ ।
ଶର୍ବସ୍ୟ ଜାୟା — ଶର୍ବାଣୀ ।
ବ୍ରହ୍ମଣଃ ପତ୍ନୀ — ବ୍ରହ୍ମାଣୀ ।
ବୃଦ୍ଧଃ ପତିଃ ଅସ୍ୟାଃ — ବୃଦ୍ଧପତ୍ନୀ ।
ସମାନଃ ପତିଃ ଅସ୍ୟାଃ — ସପତ୍ନୀ ।
ରମ୍ଭାବତ୍ ଊରୁଃ ଅସ୍ୟାଃ - ରମ୍ଭୋରୂଃ ।
ଉପାଧ୍ୟାୟସ୍ୟ ସ୍ତ୍ରୀ — ଉପାଧ୍ୟାୟାନୀ ।

ବରୁଣସ୍ୟ ସ୍ତ୍ରୀ — ବରୁଣାନୀ ।
ଶୂଦ୍ରସ୍ୟ ସ୍ତ୍ରୀ — ଶୂଦ୍ରୀ ।
ବୈଶ୍ୟସ୍ୟ ସ୍ତ୍ରୀ — ବୈଶ୍ୟୀ ।
ନୃତ୍ୟତି ଯା — ନୃତ୍ୟନ୍ତୀ ।
ଗଚ୍ଛତି ଯା — ଗଚ୍ଛନ୍ତୀ ।
ଭଦ୍ରଃ ପତିଃ ଅସ୍ୟାଃ — ଭଦ୍ରପତ୍ନୀ ।
ରୁଦ୍ରସ୍ୟ ଜାୟା — ରୁଦ୍ରାଣୀ ।
ଘଟବତ୍ ଅସ୍ୟାଃ ଊଧଃ — ଘଟୋଧ୍ନୀ ।
ଏକଃ ପତିଃ ଅସ୍ୟାଃ — ଏକପତ୍ନୀ ।
ଆଚାର୍ଯ୍ୟସ୍ୟ ସ୍ତ୍ରୀ — ଆଚାର୍ଯ୍ୟାନୀ ।
ସୂର୍ଯ୍ୟସ୍ୟ ଦେବୀ ସ୍ତ୍ରୀ — ସୂର୍ଯ୍ୟା ।
ବୀରଃ ପତିଃ ଅସ୍ୟାଃ — ବୀରପତ୍ନୀ ।
ପଥିକସ୍ୟ ସ୍ତ୍ରୀ — ପଥିକୀ ।
ପଞ୍ଚ ପତୟଃ ଅସ୍ୟାଃ — ପଞ୍ଚପତ୍ନୀ ।
ପତିଃ(ପତ୍ୟୁଃ) ଅସ୍ତି ଅସ୍ୟାଃ - ପତିମତୀ ।

## କାରକବିଭକ୍ତି

ଜ୍ଞାନସ୍ୟ ନିମିତ୍ତଂ — ଜ୍ଞାନାୟ ।
ଆସନେ ଉପବିଶ୍ୟ — ଆସନାତ୍ ।

କ୍ଷୁଧାୟାଃ ହେତୋଃ — କ୍ଷୁଧୟା ।
ବୃକ୍ଷମାରୁହ୍ୟ — ବୃକ୍ଷାତ୍ ।

## ସମାସ

ମହାନ୍ ବାହୁଃ — ମହାବାହୁଃ ।
ମହତାଂ ବାହୁଃ — ମହଦ୍‌ବାହୁଃ ।

କୁତ୍ସିତଃ ଅଶ୍ୱଃ — କଦଶ୍ୱଃ ।
କୁତ୍ସିତଃ ପୁରୁଷଃ - କାପୁରୁଷଃ, କୁପୁରୁଷଃ

ବାଲକାୟ ଅୟମ୍ — ବାଲକାର୍ଥଃ ।
ଦାନାୟ ଇଦମ୍ — ଦାନାର୍ଥମ୍ ।
କୁକ୍କୁଟ୍ୟାଃ ଅଣ୍ଡମ୍ — କୁକ୍କୁଟାଣ୍ଡମ୍ ।
ତରୁଣାଂ ଛାୟା — ତରୁଚ୍ଛାୟମ୍ ।
ଈଶ୍ୱରସ୍ୟ ସଭା — ଈଶ୍ୱରସଭମ୍ ।
ରକ୍ଷସାଂ ସଭା — ରକ୍ଷଃସଭମ୍ ।
ପିଶାଚାନାଂ ସଭା — ପିଶାଚସଭମ୍ ।
ରାଜ୍ଞଃ ସଭା — ରାଜସଭା ।
ନୃପତେଃ ସଭା — ନୃପତିସଭମ୍ ।
ପୂର୍ବଂ ରାତ୍ରେଃ — ପୂର୍ବରାତ୍ରଃ ।
ପୂର୍ବମ୍ ଅହ୍ନଃ — ପୂର୍ବାହ୍ଣଃ ।
କାଲ୍ୟାଃ ଦାସଃ — କାଳିଦାସଃ ।
ଶବାନାଂ ଶୟନମ୍ — ଶ୍ମଶାନମ୍ ।
ଦନ୍ତାନାଂ ରାଜା — ରାଜଦନ୍ତଃ ।
ସାରଂ ଦଦାତି ସଃ — ସାରଦଃ ।
ସୁନ୍ଦରୀ ମହିଳା — ସୁନ୍ଦରମହିଳା ।
ଦେବାନାଂ ରାଜା — ଦେବରାଜଃ ।
ପରମମ୍ ଅହଃ — ପରମାହଃ ।
ଅକ୍ଷ୍ଣଃ ପରମ୍ — ପରୋକ୍ଷମ୍ ।
ଗୋଃ ପଶ୍ଚାତ୍ — ଅନୁଗବମ୍ ।
ରାଜ୍ଞଃ ପନ୍ଥାଃ — ରାଜପଥଃ ।
ଦ୍ୱୟୋଃ ଦଶୋଃ ଆପଃ
ଯସ୍ୟ ତତ୍ — ଦ୍ୱୀପମ୍ ।
ତ୍ରୟାଣାଂ ପଥାଂ ସମାହାରଃ —
ତ୍ରିପଥମ୍ ।
ମହାନ୍ ପନ୍ଥାଃ — ମହାପଥଃ ।
ଶୋଭନଃ ରାଜା — ସୁରାଜା ।

ନାସ୍ତି କିଞ୍ଚନ ଯସ୍ୟ — ଅକିଞ୍ଚନଃ ।
ହରଃ ଚନ୍ଦ୍ର ଇବ — ହରଶ୍ଚନ୍ଦ୍ରଃ ।
ଦ୍ୱୟୋଃ ଅହ୍ନୋଃ ଭବଃ — ଦ୍ୱ୍ୟହ୍ନଃ ।
ଦ୍ୱୟୋଃ ଅହ୍ନୋଃ ସମାହାରଃ-ଦ୍ୱ୍ୟହଃ ।
ଅଗ୍ନିଃ ଚ ବରୁଣଃ ଚ — ଅଗ୍ନୀବରୁଣୌ ।
ଦ୍ୟୌଃ ଚ ପୃଥିବୀ ଚ-ଦ୍ୟାବାପୃଥିବ୍ୟୌ ।
ଜାୟା ଚ ପତିଶ୍ଚ — ଦମ୍ପତୀ, ଜମ୍ପତୀ,
ଜାୟାପତୀ ।
ଗଙ୍ଗା ଚ ଶୋଣଶ୍ଚ — ଗଙ୍ଗାଶୋଣମ୍ ।
ବୃଦ୍ଧଃ ପିତା ଯସ୍ୟ ସଃ — ବୃଦ୍ଧପିତୃକଃ ।
ମୂର୍ଖଃ ଭ୍ରାତା ଯସ୍ୟ ସଃ — ମୂର୍ଖଭ୍ରାତୃକଃ ।
ମୃତା ପତ୍ନୀ ଯସ୍ୟ ସଃ — ମୃତପତ୍ନୀକଃ ।
ଭଗ୍ନଂ ଧନୁଃ ଯସ୍ୟ ସଃ — ଭଗ୍ନଧନ୍ୱା ।
ସୁନ୍ଦରୀ ଜାୟା ଯସ୍ୟ ସଃ —
ସୁନ୍ଦରଜାନିଃ ।
ସୀତା ଜାୟା ଯସ୍ୟ ସଃ-ସୀତାଜାନିଃ ।
ତିସୃଣାଂ ଗଙ୍ଗାନାଂ ସମାହାରଃ-ତ୍ରିଗଙ୍ଗମ୍ ।
ଅକ୍ଷି ପ୍ରତି — ପ୍ରତ୍ୟକ୍ଷମ୍ ।
ଗୋଃ ସମୀପେ — ଉପଗୁ ।
ପୂର୍ବଂ ଭୂତଃ — ଭୂତପୂର୍ବଃ ।
ଦକ୍ଷିଣସ୍ୟାଂ ଦିଶି ପନ୍ଥାଃ-ଦକ୍ଷିଣାପଥଃ ।
ଅନ୍ତର୍ଗତାଃ ଆପଃ ଯତ୍ର ତତ୍ —
ଅନ୍ତରୀପମ୍ ।
ଜଲେ ପନ୍ଥାଃ — ଜଲପଥଃ ।
ଜନାନାମ୍ ଅଭାବଃ — ନିର୍ଜନମ୍ ।
ପଥଃ ସମୀପେ — ଉପପଥମ୍ ।
ଶୋଭନଃ ପନ୍ଥାଃ — ସୁପନ୍ଥାଃ ।

ଯୁବତିଃ ଜାୟା ଯସ୍ୟ ସଃ — ଯୁବଜାନିଃ ।

ଶ୍ୱାନଃ ପଦାନି ଇବ ପଦାନି ଯେଷାଂ ତେ — ଶ୍ୱାପଦାଃ ।

ଦ୍ୱୌ ବା ତ୍ରୟୋ ବା — ଦ୍ୱିତ୍ରାଃ ।

ପଞ୍ଚ ବା ଷଟ୍ ବା — ପଞ୍ଚଷାଃ ।

ପାଣୀ ଚ ପାଦୌ ଚ ତେଷାଂ ସମାହାରଃ — ପାଣିପାଦମ୍ ।

ତ୍ରୟାଣାଂ ଲୋକାନାଂ ସମାହାରଃ — ତ୍ରିଲୋକୀ ।

ଧନଂ ଦଦାତି ସଃ — ଧନଦଃ ।

ହରିମଧିକୃତ୍ୟ — ଅଧିହରି ।

ରୂପମନୁଗତଃ — ଅନୁରୂପଃ ।

ଲକ୍ଷ୍ମୀଃ ଜାୟା ଯସ୍ୟ — ଲକ୍ଷ୍ମୀଜାନିଃ ।

ବୃହତାଂ ପତିଃ — ବୃହସ୍ପତିଃ ।

ଅନ୍ୟଃ ଦେଶଃ — ଦେଶାନ୍ତରମ୍ ।

ତ୍ରୟାଣାଂ ଭୁବନାନାଂ ସମାହାରଃ — ତ୍ରିଭୁବନମ୍ ।

ଶାର୍ଙ୍ଗଂ ଧନୁଃ ଯସ୍ୟ ସଃ — ଶାର୍ଙ୍ଗଧନ୍ୱା ।

ଅନ୍ୟଃ ରାଜା — ରାଜାନ୍ତରମ୍ ।

କୁସ୍ୱ ତଃ ସଖା — କଂସଖା ।

କୁଶଶ୍ଚ ଲବଶ୍ଚ — କୁଶୀଲବୌ ।

ଅହଶ୍ଚ ଦିବା ଚ — ଅହର୍ଦ୍ଦିବମ୍ ।

ଚତସ୍ରଃ ଅସ୍ରୟଃ ଯସ୍ୟ ତତ୍ — ଚତୁରସ୍ରମ୍ ।

ଉଦ୍ୟାନେ ତିଷ୍ଠତି ଇତି — ଉଦ୍ୟାନସ୍ଥଃ ।

ପୁଷ୍ପଂ ଧନୁଃ ଯସ୍ୟ ତସ୍ମିନ୍ — ପୁଷ୍ପଧନ୍ୱନି ।

ତ୍ରୟୋ ବା ଚତ୍ୱାରୋ ବା — ତ୍ରିଚତୁରାଃ ।

ସପ୍ତ ବା ଅଷ୍ଟ ବା — ସପ୍ତାଷ୍ଟାଃ ।

ସହସ୍ରମ୍ ଅକ୍ଷୀଣି ଯସ୍ୟ ସଃ — ସହସ୍ରାକ୍ଷଃ ।

ନିର୍ମଳଂ ମନଃ ଯସ୍ୟ ସଃ — ନିର୍ମଳମନାଃ ।

କ୍ଷଣେ କ୍ଷଣେ — ଅନୁକ୍ଷଣମ୍ ।

ରୂପସ୍ୟ ଯୋଗ୍ୟମ୍ — ଅନୁରୂପମ୍ ।

ଜ୍ୟେଷ୍ଠସ୍ୟ ଆନୁପୂର୍ବ୍ୟେଣ — ଅନୁଜ୍ୟେଷ୍ଠମ୍ ।

ମହତ୍ ବନମ୍ — ମହାବନମ୍ ।

ବ୍ରାହ୍ମଣାୟ ଇଦମ୍ — ବ୍ରାହ୍ମଣାର୍ଥା ।

ପାଳିତଃ ଧର୍ମଃ ଯେନ ସଃ — ପାଳିତଧର୍ମା ।

ଭିକ୍ଷାୟାଃ ଅଭାବଃ — ଦୁର୍ଭିକ୍ଷମ୍ ।

ଅଙ୍ଗାନାଂ ରାଜା — ଅଙ୍ଗରାଜଃ ।

ମାତା ଚ ପିତା ଚ — ପିତରୌ, ମାତାପିତରୌ, ମାତରପିତରୌ ।

ନକ୍ତଂ ଚ ଦିବା ଚ — ନକ୍ତନ୍ଦିବମ୍ ।

ଅହଶ୍ଚ ନିଶା ଚ — ଅହର୍ନିଶମ୍ ।

ବିଘ୍ନସ୍ୟ ଅଭାବଃ — ନିର୍ବିଘ୍ନମ୍ ।

ସୂର୍ଯ୍ୟଶ୍ଚ ଚନ୍ଦ୍ରମାଶ୍ଚ — ସୂର୍ଯ୍ୟାଚନ୍ଦ୍ରମସୌ ।

